# ଜାତୀୟ
# ସାହିତ୍ୟ କଳିକା



ଓଡ଼ିଶା ଶିକ୍ଷାବିଭାଗୀୟ ଡାଇରେକ୍ଟର ମହୋଦୟଙ୍କ ତା ୨୦।୩।୫୩ ରିଖର ୧ ନମ୍ବର ନୋଟିସ୍‌ରେ ତୃତୀୟ ଶ୍ରେଣୀର ପାଠ୍ୟ ପୁସ୍ତକରୂପେ ନିର୍ବାଚିତ । (ଡି. ପି. ଆଇଙ୍କ ୮।୧।୫୧ ତାରିଖର ନୂତନ ସିଲାବସ୍ ଅନୁଯାୟୀ ଲିଖିତ)

# ଜାତୀୟ
# ସାହିତ୍ୟ କଳିକା

## ଦ୍ୱିତୀୟ ଭାଗ

(ତୃତୀୟ ଶ୍ରେଣୀ ନିମନ୍ତେ)

---

ପରିମାର୍ଜିତ ଓ ପରିବର୍ଦ୍ଧିତ ସଂସ୍କରଣ

---

୧୯୫୩

ପ୍ରକାଶକ:—

ଶ୍ରୀ ସତ୍ୟନାରାୟଣ ମିଶ୍ର

**ଓଡ଼ିଶା ପବ୍ଲିସିଂ ହାଉସ୍**

ବ୍ରହ୍ମପୁର : କଟକ : ସମ୍ବଲପୁର : ବାଲେଶ୍ୱର

ମୂଲ୍ୟ ପାଞ୍ଚଅଣା

ଅତିରିକ୍ତ ଦୁଇଅଣା

ଲେଖକ

ଶ୍ରୀ ଲୋକନାଥ ନନ୍ଦ

ପ୍ରଧାନ ଶିକ୍ଷକ

ଡଗରପଡ଼ା ଆଦର୍ଶ ଉଃ ପ୍ରାଃ ସ୍କୁଲ, କଟକ

ଓ

ଶ୍ରୀ କାଶୀନାଥ ନାୟକ

ପ୍ରଧାନ ଶିକ୍ଷକ

ପ୍ରଜାପଶାସନ କେନ୍ଦ୍ର ନଃ ପ୍ରାଃ ସ୍କୁଲ, ପୁରୀ

ସଂଶୋଧକ

ପଣ୍ଡିତ ଶ୍ରୀ ବାସୁଦେବ ମହାପାତ୍ର, ସାକ୍ଷୀଗୋପାଳ, ପୁରୀ

ମୁଦ୍ରାକର

ଶ୍ରୀ ରାମଚନ୍ଦ୍ର ରଥ

ରଥ ପ୍ରେସ୍, ବ୍ରହ୍ମପୁର

# ସୂଚୀ

ବିଷୟ | ପୃଷ୍ଠା

| ବିଷୟ | ପୃଷ୍ଠା |
| --- | --- |
| ୧୭ । ରେଲ ଭ୍ରମଣ | ୪୩ |
| ୧୮ । କପାର ନିଜ କଥା | ୪୭ |
| ୧୯ । ପିଇବା ପାଣି | ୫୧ |
| ୨୦ । ବିଦେଶୀ ବନ୍ଧୁ | ୫୪ |
| ୨୧ । ଗୃହ କୋଇଲ୍ ଲେଖକ, ବି. ପଟ୍ଟନାୟକ, ସଭାପତି ଙ୍କଙ୍କ ଭାରତୀ | ୫୮ |
| ୨୨ । ଅସ୍ପୃଶ୍ୟତା ନିବାରଣ | ୬୧ |
| ୨୩ । ଜାହାଜ | ୬୭ |
| ୨୪ । ଉତ୍କଳମଣି ଗୋପବନ୍ଧୁ | ୬୯ |
| ୨୫ । ଔଷଧ ଉଦ୍ୟାନ | ୭୩ |
| ୨୬ । ଆମେ ନୂଆ ଯୁଗର ଝୁଅ | ୭୯ |

# ଜାତୀୟ ସାହିତ୍ୟ-କଳିକା

## ( ଦ୍ୱିତୀୟ ଭାଗ )

## ମୋ ଗାଆଁ

ଏଇ ମୋର ଗାଆଁ ସରଗ ସମାନ ଏଇ ମୋ ଜନମଭୂଇଁ
ଯେତେ ବଡ଼ ହେଲେ ଏହାରି ଚରଣେ ରଖିଥିବ ମଥା ନୋଇଁ ।

ଏହାରି କୋଳ ତ ମାଆ କୋଳପରି ଆନନ୍ଦ ଦିଅଇ ମୋତେ
ଗଛେ ଦୋଳି ଖେଳି ଫୁଲ ମହୁ ପିଇ ଧରେଁ ପ୍ରଜାପତି ହାତେ ।

ଏ ଗାଆଁର ନଈ, ବଡ଼ ଆମ୍ବତୋଟା ମୋର ଅତି ପ୍ରିୟସ୍ଥାନ
ସଂସାର ଭିତରେ ଆଉ କିଏ ହେବ ଆମରି ଗାଆଁ ସମାନ ।

ଝିପି ଝିପି ଯେବେ ବରଷା ଝରଇ ଏ ମାଟିର ଗନ୍ଧ ପଢେ
ଗଛ, ବିଲ, ବଣ ଶ୍ୟାମଳ ଶୋଭାରେ ମୋର ଠିକ ମନ ହରେ ।

କେତେ କେତେ ଛବି ଫୁଟି ଉଠୁଥାଏ ବରଷକ ବାରମାସ
ନିତି ନିତି ଦେଖି ନୂଆ ନୂଆ ଶୋଭା ହୁଏ ମୋ ମନ ହରଷ ।

ଜୀବ ଥିବାଯାଏ ସାଇ ପଡ଼ିଶାଙ୍କ ସଙ୍ଗେ ହୋଇ ଏକମେଳ
ମାଆ ପରି ମୋର ଗାଆଁର ସେବାରେ ଲାଗିଥିବ ଚିରକାଳ ।

ଆମେ ଗାଆଁ ଲୋକେ କାଟିବୁ ପିନ୍ଧିବୁ, କୁଟିବୁ ଖାଇବୁ, ଆଉ
ଅଳହୁଆ ହୋଇ ପରଘାରେ ଯାଇ ପତାଇବୁ ନାହିଁ ହାତ ।
ଦେଶ ପାଇଁ ଅବା ଜାତିପାଇଁ ଯେବେ ଲୋଡ଼ା ହେବ ମୋର ପ୍ରାଣ ।
ଆଗଭର ହେବ ଦଧୀଚି ସମାନ ବଳଦିଅ ଭଗବାନ ।

## ପ୍ରଶ୍ନ

୧ । ତୁମ ଗାଆଁଟି ତୁମକୁ ଭଲ ଲାଗେ କାହିଁକି ?

୨ । ବର୍ଷାଦିନେ ଚାରିଆଡ଼ ଶାଗୁଆ ବର୍ଣ୍ଣ ଦେଖା ଯିବାର କାରଣ କଣ ?

୩ । ଝିପି ଝିପି, ନୂଆ, ନୂଆ, ସାଇପଡ଼ଶା, ଏକମେଳ—ଏହି ଶବ୍ଦ-ଗୁଡ଼ିକୁ ଗୋଟିଏ ଗୋଟିଏ ବାକ୍ୟରେ ବ୍ୟବହାର କର ।

୪ । "କାଟିବୁ ପିନ୍ଧିବୁ, କୁଟିବୁ ଖାଇବୁ" କଥାଟି ବୁଝାଇ ଦିଅ ।

୫ । ଶେଷ ପଦଟିର ଭାବ ନିଜ କଥାରେ କହ ।

---

# ପିଲାଏ ଶିଖିଲେ

ବହୁତ ଦିନ ତଳର କଥା । ଜଣେ ସନ୍ନ୍ୟାସୀ ଗୋଟିଏ ନିର୍ଜ୍ଜନବନରେ ବସି ତପସ୍ୟା କରୁଥାନ୍ତି । କିଛି ସମୟ ପରେ ଦଳେ ଦୁଷ୍ଟପିଲା ସେଠାରେ ପହଞ୍ଚିଲେ । ତପସ୍ୱୀଙ୍କୁ ଆଖି ବୁଜି ବସିଥିବାର ଦେଖି ପିଲାଙ୍କ ଭିତରୁ ଜଣେ କହିଲା, "ଭାଇ ! ଚାଲ ଏ ବାବାଜୀଙ୍କୁ ପେଲିଦେବା ।" ଆଉ ଜଣେ କହିଲା "ନାଁ ନାଁ, ଚାଲ ତା ଜଟାକୁ ଝିଙ୍କିଦେବା ।" ଅନ୍ୟ ଜଣେ କହିଲା, "ଭାଇମାନେ, ସେ ବାବାଜୀଟା ବଡ଼ ଦୁଷ୍ଟ । ତା ପାଖକୁ ଯିବା ଆଦୌ ଉଚିତ ନୁହେଁ । ସମସ୍ତେ ଦୂରରେ ରହି ଗାଳିଦେଲେ ଭଲ ହେବ ।"

ଏହି କଥାରେ ସମସ୍ତେ ସମ୍ମତ ହୋଇ ନାନା କୁକଥା କହିବାକୁ ଆରମ୍ଭ କଲେ । କେତେ ଗର୍ଜ୍ଜନ କଲେ । କେତେ ପ୍ରକାରେ ଗାଳି ଦେଲେ । ବାବାଜୀ ପୂର୍ବପରି ସ୍ଥିର ହୋଇ ଧ୍ୟାନ କରୁଥାନ୍ତି । ପିଲାମାନେ ପାଟି କରି କରି ଥଣ୍ଟି ଛିଣ୍ଡିଗଲା । ଆଉ ପାଟି କରି ନ ପାରି ଚୁପ୍ ହୋଇ ରହିଲେ ।

ଧ୍ୟାନ ଭାଙ୍ଗିଲା । ବାବାଜୀ ନିଶ୍ଚଳ ହୋଇ ବସିଥାନ୍ତି । କିଛି ସମୟ ପରେ ପିଲାମାନଙ୍କୁ ଧୀରସ୍ୱରରେ କହିଲେ "ପାଖକୁ ଆସ । ଗୋଟାଏ ଭଲ ପଦାର୍ଥ ତୁମ୍ଭମାନଙ୍କୁ ଦେବି ।"

ପିଲ୍ଲଏ କହିଲେ, "ନାଁ, ନାଁ, ପାଖକୁ ଗଲେ ଆମକୁ ଧରି ମାଡ଼ ଦେବ । ଆମେ ଆଦୌ ଯିବୁ ନାହିଁ ।" ଏହା ଶୁଣି ସନ୍ନ୍ୟାସୀ ମୁଣ୍ଡିରୁ ପାଚିଲା ଆମ୍ବଟିଏ ବାହାର କରି କହିଲେ, "ମୁଁ ଆଦୌ ମାରିବି ନାହିଁ । ଏଠାକୁ ଆସି ଆମ୍ବଟିକି ନେଇଯାଅ ।

ଆମ୍ବ ଦେଖି ପିଲ୍ଲଏ କହିଲେ, "ଯଦି ଦେବାକୁ ତୁମର ମନ ଅଛି, ତେବେ ସେଠାରୁ ଆମ ପାଖକୁ ଫୋପାଡ଼ି ଦିଅ । ଆମେ ଏଠାରୁ ନେବୁ ।"

ବାବାଜୀ କହିଲେ, "ମୋର ଗୋଟିଏ ପ୍ରଶ୍ନର ଉତ୍ତର ଯଦି ଦେଇ ପାରିବ, ତେବେ ଫଳଟି ତୁମ୍ଭଙ୍କୁ ଦେବି ।" ପିଲ୍ଲଏ ପଚାରିଲେ, "କଣ ପଚାରିବ ପଚାର ।"

ତହୁଁ ବାବାଜୀ କହିଲେ,"ଅଚ୍ଛା ! ପିଲାମାନେ, ମୁଁ ତୁମକୁ ଏ ଫଳଟି ଦେବାକୁ ଇଚ୍ଛା କରିଛି । କିନ୍ତୁ ତୁମେ ଯଦି ନ ନିଅ ତେବେ ଏ ଫଳଟି କାହାର ହେବ ?" ପିଲ୍ଲଏ ସଙ୍ଗେ ସଙ୍ଗେ ଉତ୍ତର ଦେଲେ, "ଭାରି କଥାଟାଏ ପଚାରିଲ, ଆମେ ନ ନେଲେ ତ ତୁମ ଫଳ ତୁମର ହେଲା !"

ସନ୍ୟାସୀ ଏହା ଶୁଣି ହସି ହସି କହିଲେ, "ବେଶ୍, ଆଜ ତୁମ୍ଭେମାନେ ମୋତେ ଯେତେ ଗାଳିଦେଲ, ଯେତେ କଟୁକଥା,



କୁଭାଷା କହିଲ, ମୁଁ ଯଦି ସେ ସବୁକୁ ମୋ ଦେହକୁ ନ ନିଏ ତେବେ ସେ ସବୁ କାହାର ହେବ ?"

ପିଲାମାନେ କଥାଟା ବୁଝିପାରି ବଡ଼ ଲଜ୍ଜିତ ହେଲେ । ଆଉ କିଛି ନ କହି ଚୁପ୍ ହୋଇ ଠିଆହେଲେ । ତହୁଁ ବାବାଜୀ କହିଲେ "ଦେଖ, ବାପା ! କାହାରକୁ କଟୁକଥା କହିବ ନାହିଁ । ଯେ ଖରାପ କଥା କହେ, ତାହାର ମନରେ ଖରାପ ଭାବ ଜାତ ହୁଏ । କେହି ଖଲଲୋକ ତୁମପ୍ରତି ମନ୍ଦ ବ୍ୟବହାର କଲେ ତୁମେ ତା ପ୍ରତି ଭଲ ବ୍ୟବହାର କରିବ । ତା ହେଲେ ସେ ଲୋକ ଆପେ ଆପେ ଭଲ ହୋଇଯିବ । ଯାଅ ଆଜଠାରୁ ଏହି କଥା ମନେ ରଖି କାମକର ।"

ପିଲାମାନେ କିଛି ନ କହି ସନ୍ୟାସୀଙ୍କ ପାଦତଳେ ମୁଣ୍ଡ ଲଗାଇ ଚାଲିଗଲେ ।

## ପ୍ରଶ୍ନ

୧ । ସନ୍ନ୍ୟାସୀ କାହାକୁ କହନ୍ତି ?

୨ । ସନ୍ନ୍ୟାସୀ ପିଲାମାନଙ୍କୁ କି ଉପଦେଶ ଦେଲେ ?

୩ । ଦୁଷ୍ଟ, ମନ୍ଦ, ହସ, ପିଲା—ଏଗୁଡ଼ିକର ବିପରୀତ ଶବ୍ଦ କହ ।

୪ । ଶୂନ୍ୟସ୍ଥାନ ପୂରଣ କର—କେହି ଲୋକ ତୁମ—ମନ୍ଦ—କଲେ ତୁମେ ତା ପ୍ରତି ଭଲ—କରିବ ।

୫ । ନିର୍ଜନ, ପ୍ରାନ୍ତର, କଣ୍ଠୁ, ଗ୍ରହଣ, ମୁଣ୍ଡ ଲଗାଇ, ଏଗୁଡ଼ିକର ଅର୍ଥ ଲେଖି ବାକ୍ୟରେ ବ୍ୟବହାର କର ।

---

# ସର୍ଦ୍ଦାରଜୀ

ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କୁ ସମସ୍ତେ ଜାଣନ୍ତି । ସ୍ୱାଧୀନ ଭାରତର ସେ ଜଣେ ମନ୍ତ୍ରୀ ଥିଲେ ।



ଗୁଜରାଟ ନିକଟରେ କରମସାଦ୍ ଗ୍ରାମରେ ଗୋଟିଏ ଗରିବ ଚାଷୀ ଘରେ ତାଙ୍କର ଜନ୍ମ । ଧନ ଅଭାବରୁ ସେ ଅଧିକ ପାଠ ପଢ଼ି ନ ପାରି ମୁକ୍ତିଆରି ପାଶ କଲେ । କଚେରିରେ ବଡ଼ ବଡ଼ ମକଦ୍ଦମାରେ ଲଢ଼ି ସେ ବରାବର ଜିତୁଥିଲେ । ଏଥିରେ ତାଙ୍କର ଢେର ରୋଜଗାର ହେଲା ତାଠାରୁ ନାମ ବେଶୀ ହେଲା । ତେଣୁ ସେ ବାରିଷ୍ଟର ପଢ଼ିବା ପାଇଁ ବିଲାତ ଗଲେ ।

ଅଳ୍ପଦିନ ପରେ ସେ ବିଲାତରୁ ଆସି ଭାରତରେ ବାରିଷ୍ଟରୀ ଆରମ୍ଭ କଲେ । ଏହିକବେଳେ ତାଙ୍କର ମହାତ୍ମା ଗାନ୍ଧିଙ୍କ ସହ ପ୍ରଥମ ପରିଚୟ ହେଲା ।

ସେତେବେଳେ ମହାତ୍ମା ଗାନ୍ଧି ଏ ଦେଶରୁ ଇଂରେଜ ସରକାରଙ୍କୁ ତଡ଼ି ଦେଶକୁ ସ୍ୱାଧୀନ କରିବା ପାଇଁ ଆନ୍ଦୋଳନ କରୁଥାନ୍ତି । କେତେ ବଡ଼ ବଡ଼ ଲୋକ ତାଙ୍କ ସହିତ ଯୋଗ ଦେଉଥାନ୍ତି । ପଟେଲ ମଧ୍ୟ ତାଙ୍କ ରୋଜଗାରକୁ ବଡ଼ ମନେ ନ କରି ଦେଶବାସୀଙ୍କ ସେବା କରିବା ପାଇଁ ବାରିଷ୍ଟରୀ ଛାଡ଼ି ଦେଲେ ଓ ସେହି ଆନ୍ଦୋଳନରେ ମିଶିଲେ । କ୍ରମେ ଆନ୍ଦୋଳନ ବଢ଼ିଲା ।

ଥରେ ଇଂରେଜ ସରକାର ବର୍ଦ୍ଦୋଲି ନାମକ ସ୍ଥାନର ଚାଷୀମାନଙ୍କ ଉପରେ ହଠାତ୍ ଖଜଣା ବଢ଼ାଇ ଦେଲେ । ଏଥିରେ ଚାଷୀମାନେ ବଡ଼ ହଇରାଣରେ ପଡ଼ିଲେ । କ'ଣ କରିବେ ବୋଲି ଥଳକୂଳ ପାଉ ନ ଥାନ୍ତି । ଏହିକବେଳେ ପଟେଲ ଏ ଖବର ପାଇ ବର୍ଦ୍ଦୋଲିର ଗାଁ ଗାଁ ବୁଲି ଚାଷୀମାନଙ୍କୁ ଏକାଠି କରି କହିଲେ, "ସରକାର ଆମ ପ୍ରତି ଅନ୍ୟାୟ କରୁଛି । ଆମ୍ଭେମାନେ ଏ ଅନ୍ୟାୟ କଦାପି ସହିବା ନାହିଁ । ଏଥରକ ଏ ଅନ୍ୟାୟ ସହିଗଲେ, ସରକାର ପୁଣି ଅନ୍ୟାୟ କରିବ । ତେଣୁ ଆମେ ସମସ୍ତେ ଏକମେଳ ହୋଇ ଖଜଣା ବନ୍ଦ କରି ସରକାରକୁ ଠିକ୍ କଥା ଜଣାଇ ଦେବା । ଉଚିତ କଥାରେ ଯଦି ଆମକୁ ଦଣ୍ଡ ମିଳେ ତାହା ସହିବା ।"

ପଟେଲଙ୍କ ଏ କଥାରେ ସମସ୍ତେ ଖଜଣା ବନ୍ଦ କରିଦେଲେ । ସରକାର ଏ ମେଳ ଦେଖି ଲୋକମାନଙ୍କୁ ଠେଙ୍ଗାରେ ପିଟିଲେ; ଜେଲରେ ପୂରାଇଲେ । ନିଜେ ପଟେଲ ମଧ୍ୟ ମାଡ଼ ଖାଇ ଜେଲ

ଗଲେ, ମାତ୍ର ଲୋକଙ୍କର ଆନ୍ଦୋଳନ ନ କମି ବରଂ ବଢ଼ିଲା । ପ୍ରାଣ ଗଲେ ଦେବୁଁ କଦାପି ଅନ୍ୟାୟ ସହିବୁ ନାହିଁ ବୋଲି ଲୋକେ ପ୍ରତିଜ୍ଞା କଲେ ।

ସରକାର ଜେଲ ବା ମାଡ଼ର ଭୟ ଦେଖାଇ ଲୋକମାନଙ୍କୁ ଦବାଇ ପାରିଲେ ନାହିଁ । ଶେଷରେ ପଟେଲ ଯେଉଁଥିପାଇଁ ଆନ୍ଦୋଳନ କରୁଥିଲେ । ତାହା ସଫଳ ହେଲା । ଖଜଣା ବଢ଼ିଲା ନାହିଁ । ଏହି ବର୍ଦ୍ଦୋଲି ଆନ୍ଦୋଳନ ପରଠାରୁ ପଟେଲଙ୍କୁ ସମସ୍ତେ ସର୍ଦ୍ଦାର ପଟେଲ ବୋଲି ଡାକିଲେ ।

ପଟେଲ ମରିଗଲେଣି । ସେ ମୃତ୍ୟୁ ପର୍ଯ୍ୟନ୍ତ ମୁହୂର୍ତ୍ତେ ସୁଦ୍ଧା ସମୟ ନଷ୍ଟ ନ କରି ଦେଶ କାମରେ ମନ ଦେଇଥିଲେ । ସେ ସ୍ୱାଧୀନ ଭାରତର ସହକାରୀ ପ୍ରଧାନ ମନ୍ତ୍ରୀ ଭାବରେ କାର୍ଯ୍ୟ କରୁଥିଲେ । ଏହି ରାଜ୍ୟ ଚଳାଇବା ପାଇଁ କେତେ ବିପଦ ପଡ଼ୁଥିଲା, ମାତ୍ର ସେ ସେହି ସବୁ ସହି ଶାସନ କରୁଥିଲେ ।

## ପ୍ରଶ୍ନ

୧ । ବର୍ଦ୍ଦୋଲି ଲୋକଙ୍କୁ ସର୍ଦ୍ଦାରଜୀ କ'ଣ ବୁଝାଇଲେ ?
୨ । ସରକାର କି ଉପାୟ କରି ଲୋକଙ୍କୁ ଡରାଇବେ ବୋଲି ଭାବୁଥିଲେ ? ଫଳ କ'ଣ ହେଲା ?
୩ । ପଟେଲଙ୍କ ବିଷୟ ପଢ଼ି ତୁମେ କ'ଣ ଶିଖିଲ ?
୪ । ପଟେଲଙ୍କୁ ସର୍ଦ୍ଦାର ପଟେଲ ବୋଲି କାହିଁକି କହନ୍ତି ?
୫ । ଶବ୍ଦଗୁଡ଼ିକ ନେଇ ବାକ୍ୟ ଗଠନ କର—ଆନ୍ଦୋଳନ, ଅନ୍ୟାୟ, ସର୍ଦ୍ଦାର ପ୍ରତିଜ୍ଞା ।

# ଚାନ୍ଦବିବି

ଅହମଦନଗରର ସୁଲତାନ ମରିଯିବାବେଳେ ତାଙ୍କ ପୁଅକୁ ଅଳ୍ପ ବୟସ ହୋଇଥିଲା, ତେଣୁ ତାଙ୍କ ପିଉସୀ ଚାନ୍ଦବିବି ରାଜ୍ୟ ଶାସନ କଲେ । ଚାନ୍ଦବିବିଙ୍କ ଶାସନରେ ପ୍ରଜାମାନେ ସୁଖ ଶାନ୍ତିରେ ଥାନ୍ତି, ହେଲେ ମନ୍ତ୍ରୀମାନଙ୍କୁ ଏ ଶାସନ ଭଲ ଲାଗିଲା ନାହିଁ । କାରଣ ସେମାନେ ଜଣେ ସ୍ତ୍ରୀ ଲୋକ ଅଧୀନତାରେ ରହି କାମ କରିବାକୁ ଅପମାନ ବୋଧ କଲେ ।

ସେତେବେଳେ ଅକବର ଦିଲ୍ଲୀର ସମ୍ରାଟ । ରାଜ୍ୟର ପ୍ରଧାନ ମନ୍ତ୍ରୀ ଚାନ୍ଦବିବିଙ୍କୁ ଗାଦିରୁ ତଡ଼ିବା ପାଇଁ ଗୋଟିଏ ବୁଦ୍ଧି ପାଞ୍ଚିଲେ । ସେ ସମ୍ରାଟ ଅକବରଙ୍କ ପାଖକୁ ଗୋପନରେ ଗୋଟିଏ ଚିଠି ଲେଖିଲେ, ଆପଣ ଅହମଦନଗର ଆକ୍ରମଣ କରନ୍ତୁ, ଆମ୍ଭେମାନେ ଆପଣଙ୍କୁ ସାହାଯ୍ୟ କରିବୁ ।

ଅକବର ଏ ଖବର ପାଇ ତାଙ୍କ ପୁଅ ମୁରାଦଙ୍କୁ ଅହମଦ-ନଗର ଆକ୍ରମଣ କରିବାକୁ ପଠାଇଲେ ।

ମୁରାଦ ଯୁଦ୍ଧ କରିବାକୁ ଆସୁଥିବା ଖବର ପାଇ ଚାନ୍ଦବିବି ତଳେ ହେଲେ ଭୟ ନ କରି ପ୍ରାଣ ଯିବା ପର୍ଯ୍ୟନ୍ତ ଲଢ଼ିବାକୁ ପ୍ରସ୍ତୁତ ହେଲେ । ସୈନ୍ୟମାନଙ୍କୁ ଡକାଇ କହିଲେ, "ଦେଖ, ଶତ୍ରୁ ଆସି ଦୁଆର ମୁହଁରେ, ଦେହରେ ବିନ୍ଦୁଏ ରକ୍ତ ଥିବା ପର୍ଯ୍ୟନ୍ତ ଶତ୍ରୁ ଯେପରି ଆମ ଗଡ଼ ଭିତରେ ନ ପଶେ, ସେହି ପଣ କର । ଏ ଆମର ରାଜ୍ୟ । ଆମେ ଯୁଦ୍ଧ କରି ମାଟିରେ ମିଶିଯିବା ପଛକେ, ଦେଶକୁ ଶତ୍ରୁ ହାତକୁ ଛାଡ଼ି ଦେବା ନାହିଁ ।

ରାଣୀଙ୍କର କଥା ଶୁଣି ସୈନ୍ୟମାନେ ମାତି ଉଠିଲେ । ସଙ୍ଗେ ସଙ୍ଗେ ଦୁର୍ଗଦ୍ୱାର ବନ୍ଦ କରି ଦିଆଗଲା ।

ରାଜପୁତ୍ର ମୁରାଦ ଅହମଦନଗରରେ ପହଞ୍ଚି ଦେଖିଲେ, ଗଡ଼ଦ୍ୱାର ବନ୍ଦ ଓ ସୈନ୍ୟମାନେ ଯୁଦ୍ଧ ପାଇଁ ପ୍ରସ୍ତୁତ ଅଛନ୍ତି । ସେ ଆଉ ଯୁଦ୍ଧ ନ କରିବା ପାଇଁ ଉପାୟ କଲେ । ରାତିରେ ଗଡ଼ର ପ୍ରାଚୀର ଭାଙ୍ଗି ଉଡ଼ାଇ ଦେବା ନିମିତ୍ତ ତା ତଳେ ଗୋଳା ବାରୁଦ ଖଞ୍ଜିଦେଲେ । ଗଡ଼ ବାହାରେ ଆସି ଶୋଇଲେ ।

ଗୁନ୍ଦବଢ଼ ମୁରାଦଙ୍କ କୌଶଳ ବୁଝିପାରି ରାତି ରାତି ନିଜ ହାତରେ ପାଚେରିରେ ଖଞ୍ଜା ହୋଇଥିବା ଗୋଳା ବାରୁଦଗୁଡ଼ିକ କାଢ଼ି ଫିଙ୍ଗିଦେଲେ । ମାତ୍ର ସବୁଯାକ କାଢ଼ି ଫିଙ୍ଗି ଦେବା ସମ୍ଭବ ହୋଇ ପାରିଲା ନାହିଁ ।

ଯେଉଁ ସ୍ଥାନମାନଙ୍କରେ ଗୋଳା ବାରୁଦ ରହିଯାଇଥିଲା ତାହା ରାତିରେ ଫୁଟି ପ୍ରାଚୀରର ଅନେକ ଜାଗା ଭାଙ୍ଗି ପକାଇଲା ।

ଗୋଳା ଫୁଟିବା ଶବ୍ଦ ଶୁଣି ମୁରାଦ ଭାରି ଖୁସି ହୋଇ ଭାବୁଥାନ୍ତି, ରାତି ପାହିଲାବେଳକୁ ଅହମଦନଗର ମୋର ଅଧୀନ ହୋଇଥିବ ।

ରାତି ପାହି ସକାଳ ହେଲା । ମୁରାଦ ଯାଇ ଦେଖିଲେ, ଭାଙ୍ଗି ପଡ଼ିଥିବା ପୁରୁଣା ପ୍ରାଚୀର ନୂଆ ହୋଇ ଗଢ଼ା ସରିଛି । ଦୁର୍ଗ ଉପରେ ଜଣେ ରମଣୀ ଯୁଦ୍ଧ ସାଜ ପିନ୍ଧି ତରବାରି ହାତରେ ଧରି ଯୁଦ୍ଧ କରିବାକୁ ପ୍ରସ୍ତୁତ ଅଛନ୍ତି । ଏହା ଦେଖି ମୁରାଦଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେ ଜାଣିଲେ, ଗୁନ୍ଦବଢ଼ଙ୍କ ଆଦେଶରେ ହଜାର ହଜାର ଲୋକ ରାତିକ ମଧ୍ୟରେ ଏ ନୂଆ ପ୍ରାଚୀର ତୋଳି ଦେଇଛନ୍ତି । ଜଣେ ସ୍ତ୍ରୀ ଲୋକର ଏପରି ସାହସ

ଦେଖି ସେ ମୁରାଧ ହୋଇଗଲେ ଏବଂ କହିଲେ, ଏପରି ସ୍ତ୍ରୀ ପ୍ରକୃତରେ ରାଜ୍ୟ ଶାସନ କରିବାକୁ ଉପଯୁକ୍ତ । ମୁରାଦ ଆଉ ଯୁଦ୍ଧ ନ କରି ଦିଲ୍ଲୀକୁ ଫେରିଗଲେ ।

## ପ୍ରଶ୍ନ

୧ । ରୁଦ୍ରଦେବଙ୍କ ମନ୍ତ୍ରୀ କାହିଁକି ତାଙ୍କ ଉପରେ ଅସନ୍ତୁଷ୍ଟ ଥିଲେ ?

୨ । ଶତ୍ରୁ ଆସିବା ଜାଣି ରୁଦ୍ରଦେବ ତାଙ୍କର ସୈନ୍ୟମାନଙ୍କୁ ଯାହା କହିଥିଲେ କହ ।

୩ । ମୁରାଦ କାହିଁକି ଯୁଦ୍ଧ ନ କରି ଫେରିଗଲେ ?

---

# ବୀର ବାଳକ

ଷୋଳ ବରଷର ବାଳକ ନାମ ତା ଅଭିମନ୍ୟୁ,
ବୀରପଣ ତାର ପାଶୋରି କେବେ ନ ଯିବ ମନୁ ।
ସୁଭଦ୍ରାଙ୍କ ଗର୍ଭ ରତନ ପାଣ୍ଡବଙ୍କ ସଙ୍ଗାଳି
ଆଦର କରନ୍ତି ସରବେ ଜଣେ ଜଣକୁ ବଳି ।
ଲାଗିଛି ଭୀଷଣ ସମର କୁରୁ ପାଣ୍ଡବଙ୍କର
ମହାବୀର ଦ୍ରୋଣ ବହୁତ ସେନା କଲେ ସଂହାର ।
ବୀର ଅର୍ଜୁନ ନାହାନ୍ତି ପଡ଼ିଗଲା ଭୁଲେଣି
ଦ୍ରୋଣଙ୍କୁ କିଏ ସେ ରୋକିବ ତହିଁ ନ ହେଲା ଜାଣି ।
ବୀର ଅଭିମନ୍ୟୁ ଯେତେବେଳେ ଦେଖୁଥିଲେ ସମର
ଦ୍ରୋଣ ସଙ୍ଗେ ରଣ କରିବା ପାଇଁ ହେଲେ ବାହାର ।
ଅର୍ଜୁନ ଯାହାର ଜନକ, ଦାମୋଦର ମାତୁଳ
ଆଗଭର ହୋଇ ଆସିଲେ ଧରି ଧନୁତୂଣୀର ।

ପଶି କୁରୁ ସେନା ଗହଳେ କଲେ ଭୀଷଣ ରଣ
ବାଳକ ବୀରତ୍ୱେ ଚକିତ ହେଲେ ସକଳ ଜନ ।
ମୁଣ୍ଡ ପକାଇଲେ ସମର ଭୂଇଁ କୌରବ ଥାଟ
ଶହ ଶହ ଶିର କଟିଲା, ହେଲା ମହା ସଂକଟ ।



ପାଣ୍ଡବ ବିଜୟ ପତାକା ଫର ଫର ଉଡ଼ିଲା
କଉରବ ସେନା ଶିବରେ ଘୋର ଚିନ୍ତା ପଡ଼ିଲା ।
ଅନ୍ୟାୟ ସମରେ ମାରିବେ ଶେଷେ କଲେ ସ୍ଥିର
ସପ୍ତ ରଥୀମିଶି ଯୁଝିଲେ ବୀର ଶିଶୁ ସଙ୍ଗର ।

ଏକାକୀ ଯୁଝିଲା ବାଳକ ତଲେ ନ ହୋଇ ଭୀତ
ଯୁଦ୍ଧ କରି କରି ଥକିଲା ତାର କଅଁଳ ହାତ ।
ବାଳବୀର ଶିର କାଟିଲେ ମିଳି ସାତ ସେନାନୀ
ଅନ୍ୟାୟ କରିଲେ କୌରବ, ଘୋଷେ ସାରା ଅବନୀ ।
ଦେହ ତ ମିଶିଲା ମାଟିରେ ମଲା ବୀର ବାଳକ
ବୀର ପଣ ତାର ବଞ୍ଚିଥିବ କାଳ କାଳକ ।

## ପ୍ରଶ୍ନ

୧ । ଅଭିମନ୍ୟୁ କିଏ ? ଶ୍ରୀକୃଷ୍ଣ ତାଙ୍କର କଣ ହୁଅନ୍ତି ?

୨ । 'ବୀରପଣ ତାର ବଞ୍ଚିଥିବ କାଳକାଳକ'ର ଅର୍ଥ ବୁଝାଇ ଦିଅ ।

୩ । ଗଣ୍ଡିରଥନ, ଭୀଷଣ, ମାତୁଳ, ଶିବିର, ତୂଣୀର, ଚକଟା, ଅବନୀ—ଏଗୁଡ଼ିକର ଅର୍ଥ ଲେଖି ବାକ୍ୟରେ ବ୍ୟବହାର କର ।

---

## ବାପୁଜୀଙ୍କ ପିଲାଦିନ

ମହାତ୍ମା ଗାନ୍ଧି ଗୁଜରାଟର ପୋରବନ୍ଦର ବୋଲି ଗୋଟିଏ ସହରରେ ଜନ୍ମ ହୋଇଥିଲେ । ତାଙ୍କୁ ପିଲାଦିନେ ମୋହନ ବୋଲି ଡାକୁଥିଲେ । ମୋହନଙ୍କଠାରେ ପିଲା ଦିନରୁ ବହୁତ ଗୁଡ଼ିଏ ଭଲ ଗୁଣ ଦେଖା ଯାଉଥିଲା । ସେ ବଡ଼ମାନଙ୍କ ବୋଲ ମାନୁଥିଲେ । କଦାପି ମିଛ କହୁ ନ ଥିଲେ । କାହାର ଦୁଃଖ ଦେଖିଲେ ଅଧୀର ହୋଇ କାନ୍ଦ ପକାଉଥିଲେ ।

ମୋହନ ଯେଉଁ ବିଦ୍ୟାଳୟରେ ପଢୁଥିଲେ, ତାଙ୍କୁ ପରିଦର୍ଶନ କରିବା ପାଇଁ ଥରେ ଜଣେ ହାକିମ ଆସିଲେ । ସେ ମୋହନଙ୍କ ଶ୍ରେଣୀର ପିଲାଙ୍କୁ କେତୋଟି ଶବ୍ଦ ଲେଖିବାକୁ ଡାକିଲେ । ସେହି ଶବ୍ଦ ଗୁଡ଼ିକ ଭିତରୁ ଗୋଟିକର ବନାନ ମୋହନଙ୍କୁ ଆସିଲା ନାହିଁ । ଶିକ୍ଷକ ପାଖରେ ଠିଆ ହୋଇ ମୋହନଙ୍କର ଭୁଲହେବା ଦେଖିଲେ ଓ ପାଖପିଲାର ଖାତା ଦେଖି ଠିକ୍ କରି ଲେଖି ଦେବାକୁ ଠାରିଦେଲେ । ମାତ୍ର ମୋହନ ସେ ଆଡ଼କୁ ଆଦୌ ଦୃଷ୍ଟି ଦେଲେ ନାହିଁ । ସେ ଭାବିଲେ, ଅନ୍ୟଠାରୁ ଦେଖି କରି ଲେଖିବା ଓ ତାକୁ ନିଜର ବୋଲି କହିବା ପାପ ।



ଅନ୍ୟ ପିଲାଙ୍କର ସବୁଯାକ ଠିକ୍ ହେଲା । ମୋହନଙ୍କର ଭୁଲହେଲା ବୋଲି ସେ ଦୁଃଖ କରି ନ ଥିଲେ । ବରଂ ଅନ୍ୟ କେତେକଙ୍କ ପରି ସେ ଅନ୍ୟାୟ କରି ନାହାନ୍ତି ବୋଲି ଭାବି ଖୁସିହେଲେ ।

ଆଉଥରେ ମୋହନ ତାଙ୍କ ବାପାଙ୍କୁ ଲୁଚାଇ ସାଙ୍ଗସାଥିମାନଙ୍କ ସହିତ ମିଶି ବଡ଼ ଖାଇଥିଲେ । ଖାଇ ସାରିବା ପରେ ତାଙ୍କ ମନ ଏପରି ଖରାପ ହେଲା ଯେ ସେ, ମନକୁ ଯାଇ ବାପାଙ୍କ ଆଗେ ସବୁ କଥା କହି ଦୋଷ ମାନିଗଲେ ଓ ଆଉ କେବେ ବଡ଼ ଖାଇବେ ନାହିଁ ବୋଲି ପ୍ରତିଜ୍ଞା କଲେ ।

ମୋହନଙ୍କ ପରିବାରରେ କେହି ଆମିଷ ଖାଉ ନ ଥିଲେ । ତେଣୁ ମାଛ ବା ମାଂସ କପରି ଲାଗେ, ସେ ଜାଣି ନ ଥାନ୍ତି । କପରି ଥରେ ସେ ମାଂସ ଖାଇବେ, ଏକଥା ତାଙ୍କ ମନରେ ଥାଏ ।

ଏକଥା ଜାଣି ଥରେ ତାଙ୍କର ଜଣେ ସାଙ୍ଗ ଛେଳି ମାଂସ ତରକାରି କରି ମୋହନଙ୍କୁ ଖାଇବାକୁ ଡାକିଲା । ସେ ସାଙ୍ଗଠାରୁ ନିମନ୍ତ୍ରଣ ପାଇ ମାଂସ ଖାଇବା ନିମନ୍ତେ ଲୁଚିକରି ଘରୁ ଚାଲିଗଲେ ।

ଗାଁ ମୁଣ୍ଡର ଗୋଟିଏ ନିଛାଟିଆ ଜାଗାରେ ଦୁହେଁଯାକ ବସି ଗୋଟିଏ ଥାଳିରେ ମାଂସ ତରକାରି ଓ ପାଉଁରୁଟି ଖାଇଲେ । ମାତ୍ର ମୋହନଙ୍କୁ ସେ ସବୁ କିଛି ଭଲ ଲାଗିଲା ନାହିଁ ।

ତାପରେ ମୋହନ ଘରକୁ ଆସି ଶୋଇଲେ । ଶୋଇଲା-ବେଳେ ସେହି ମାଂସ ତରକାରି କଥା ମନରେ ବାରିବାର ପଡୁଥାଏ । ତାଙ୍କୁ ଆଦୌ ନିଦ ଲାଗୁ ନ ଥାଏ । ସେ ବିଛଣାରେ ପଡ଼ି ଏପଟ ସେପଟ ହେଉଥାନ୍ତି । କିଛି ସମୟ ପରେ ତାଙ୍କୁ ଟିକିଏ ନିଦ ଲାଗି ଆସିଲା । ସେ ସ୍ୱପ୍ନରେ ଦେଖିଲେ, ତାଙ୍କ ପେଟ ଭିତରେ ଗୋଟିଏ ଛେଳି ମେଁ ମେଁ ହୋଇ ରଡ଼ି ଛାଡୁଛି । ସେ ଚମକି ପଡ଼ିଲେ । ନିଦ ଭାଙ୍ଗିଗଲା । ରାତି ପାହିବା ପର୍ଯ୍ୟନ୍ତ ଆଉ ନିଦ ହେଲା ନାହିଁ ।

ସେହି ଦିନରୁ ସେ ଆମିଷ ଛୁଇଁବେ ନାହିଁ ବୋଲି ପ୍ରତିଜ୍ଞା କରିଥିଲେ ଓ ତାହା ଜୀବନଯାକ ପାଳନ କରିଥିଲେ ।

ବୟସ ହେବାରୁ ସେ ବହୁତ ଭଲକାର୍ଯ୍ୟ କରି ସମଗ୍ର ଭାରତର ନେତା ହୋଇ ପାରିଥିଲେ । ତାଙ୍କୁ ପୃଥିବୀର ଲୋକମାନେ ବାପା ବୋଲି କହନ୍ତି । ହିନ୍ଦି କହିବା ଲୋକେ ବାବାଙ୍କୁ ବାପୁଜୀ ବୋଲି ଡାକନ୍ତି ।

## ପ୍ରଶ୍ନ

୧ । ମୋହନଙ୍କର ପୂର୍ଣ୍ଣନାମ କ'ଣ ?
୨ । ସେ କାହିଁକି ମାଂସ ଛାଡ଼ିଲେ ?
୩ । ସଜାଇ ଲେଖ—

ସ୍ୱପ୍ନରେ ଦେଖିଲେ ତାଙ୍କ ଗୋଟାଏ ମେଁ ମେଁ ଛେଳି ରଡ଼ି ଛାଡ଼ୁଛି ହୋଇ ସେ ପେଟ ଭିତରେ ।

---

# କୁକୁରର ପ୍ରଭୁଭକ୍ତି

ଥରେ ଜଣେ ସୌଦାଗର ଥଳିରେ ଗୁଡ଼ିଏ ଟଙ୍କା ପୂରାଇ ଘୋଡ଼ାରେ ବସି ବହୁ ଦୂର ସ୍ଥାନରୁ ନିଜ ଘରକୁ ଫେରୁଥିଲେ । ତାଙ୍କ ପୋଷା କୁକୁରଟି ତାଙ୍କ ସାଙ୍ଗରେ ଥାଏ । କିଛି ଦୂର ଆସି ହାଲିଆ ହୋଇଯିବାରୁ ସୌଦାଗର ଘୋଡ଼ାରୁ ଓହ୍ଲାଇଲେ, ଟଙ୍କା ଥଳିଟି ଗୋଟିଏ ବୁଦାମୂଳରେ ରଖିଲେ । ଗୋଟିଏ ବଡ଼ ଗଛ-ମୂଳରେ କିଛି ସମୟ ବିଶ୍ରାମ ନେଲେ ।

ସୌଦାଗର ସୁସ୍ଥବୋଧ କରିବାରୁ ଘୋଡ଼ାରେ ବସି ଘର ଆଡ଼କୁ ବାହାରି ଆସିଲେ, ମାତ୍ର ଥଳିଟି ଆଣିବାକୁ ତାଙ୍କର ମନେ ପଡ଼ିଲା ନାହିଁ । କୁକୁରଟି ଏହା ଜାଣିପାରି ସେ ବୁଦାମୂଳକୁ ଫେରିଗଲା । ଥଳିଟିକୁ ମୁହଁରେ କାମୁଡ଼ି ଆଣିବାକୁ ବହୁ ଚେଷ୍ଟା କଲା । ମାତ୍ର ତାହା ଭାରି ହୋଇଥିବାରୁ ଉଠାଇ ନ ପାରି ଖୁବ୍ ଶୀଘ୍ର ଦୌଡ଼ିଯାଇ ନିଜ ମାଲିକଙ୍କୁ ବାଟ ଓଗାଳିଲା । ଘୋଡ଼ା ଆଗରେ ଠିଆ ହୋଇ ଚିତ୍କାର କଲା ଓ ଘୋଡ଼ା ଗୋଡ଼କୁ ବାରମ୍ବାର କାମୁଡ଼ି ତାକୁ ଅଟକାଇବାକୁ ଚେଷ୍ଟା କଲା । କୁକୁର କାହିଁକି ଏପରି କରୁଛି, ମାଲିକ ଏକଥା ବୁଝି ପାରିଲେ ନାହିଁ । ଟଙ୍କା ଥଳି କଥା

ତାଙ୍କର ଆଦୌ ମନେ ନଥାଏ । ମାଲିକ ଘୋଡ଼ା ନ ଅଟକାଇବାରୁ ସେ ଆହୁରି ଜୋରରେ ଚିତ୍କାର କରି ଘୋଡ଼ାକୁ କାମୁଡ଼ିଲା । ମାଲିକଙ୍କ ପୋଷାକକୁ ଚିରିବା ପାଇଁ ତାଙ୍କ ଉପରକୁ ଡେଇଁଲା ।

କୁକୁରଟି ପାଗଳ ହୋଇ ଯାଇଛି ଭାବି ସୌଦାଗର ପିସ୍ତଲ ବାହାର କରି କୁକୁରକୁ ଗୁଳି କରିଦେଲେ । ଗୁଳି ବାଜି ତା ଦେହରୁ ଝରି ଝରି ରକ୍ତ ବହିବା ଦେଖି ମାଲିକଙ୍କ ମନଟର ଭାରି ଦୁଃଖ ହେଲା । ସେ ଶୀଘ୍ର ଘୋଡ଼ା ଦଉଡ଼ାଇ ସେଠାରୁ ଚାଲିଗଲେ ।



କିଛିଦୂର ଆସିବା ପରେ ତାଙ୍କର ଟଙ୍କା ଥଳି କଥା ମନେ ପଡିଗଲା । ସେ ଦେଖିଲେ ଥଳିଟି ନାହିଁ । ସେତେବେଳେ ସବୁକଥା ତାଙ୍କର ସ୍ମରଣ ହୋଇଗଲା । ସେ ବଡ଼ ଚିନ୍ତିତ ହୋଇ କୁକୁରଟିକୁ ଦେଖିବା ଓ ଥଳି ପାଇବା ଆଶାରେ ଜୋରରେ ଘୋଡ଼ା ଫେରାଇଲେ । ଯେଉଁଠାରେ କୁକୁରକୁ ଗୁଳି କରିଥିଲେ ସେଠାରେ କୁକୁରକୁ ଦେଖିଲେ ନାହିଁ । ବାଟସାରା ଟୋପା ଟୋପା ରକ୍ତ ପଡ଼ିଥାଏ । ରକ୍ତର ଚିହ୍ନ ଦେଖି ଯାଉଁ ଯାଉଁ ଯେଉଁ ବୁଦା

ଭିତରେ ଥଳିଟି ରଖିଥିଲେ, ସେଠାକୁ ଆସି ଦେଖନ୍ତି ତ ତାଙ୍କର ଅତି ପ୍ରିୟ କୁକୁରଟି ଥଳି ଉପରେ ଛଟପଟ ହେଉଛି । ଦେହର ରକ୍ତରେ ଥଳିଟି ଓଦା ହୋଇ ଗଲାଣି ।

କୁକୁରଟି ନିଜର ପ୍ରଭୁଙ୍କୁ ଦେଖି ଆନନ୍ଦରେ ଲାଙ୍ଗୁଡ଼ ହଲାଇ ଉଠିବାକୁ ଚେଷ୍ଟାକଲା, କିନ୍ତୁ ଉଠିପାରିଲା ନାହିଁ । ମାଲିକ ଭୂମିରେ ବସିପଡ଼ି ତା ଦେହକୁ ଆଉଁସି ଦେଲେ । କୁକୁରଟି ପ୍ରଭୁଙ୍କର ହାତ ଶୁଙ୍ଘୁଁ ଶୁଙ୍ଘୁଁ ମରିଗଲା । ତା'ର ପ୍ରଭୁ କାନ୍ଦି କାନ୍ଦି ଦୁଃଖରେ ଥଳି ନେଇ ଘରକୁ ଫେରିଲେ ।

## ପ୍ରଶ୍ନ

୧ । କୁକୁର ପରି କେତୋଟି ଗୃହପାଳିତ ଜନ୍ତୁର ନାମ କହ ।

୨ । 'କୁକୁରର ପ୍ରଭୁଭକ୍ତି' ଗପଟି ନିଜ କଥାରେ କହ ।

୩ । ଛଟପଟ, ଝିଙ୍କିବା, ସ୍ମରଣ, ଚିତ୍କାର, ଉପସ୍ଥିତ, ବାରମ୍ବାର— ଏ ଶବ୍ଦଗୁଡ଼ିକ ଲଗାଇ ବାକ୍ୟ ଗଢ଼ ।

---

# ପିପିଲି ହାଟ

ପୁରୀ ଜିଲାରେ ପିପିଲି ଗୋଟିଏ ପ୍ରଧାନ ସ୍ଥାନ । ଏଠାରୁ ପୁରୀ, ଖୋର୍ଦ୍ଧାରୋଡ଼, କଟକ ଓ ନିମାପଡ଼ାକୁ ରାସ୍ତାର ସୁବିଧା ଅଛି । ଏ ସ୍ଥାନର ଦରଜୀମାନେ ସୁନ୍ଦର ସୁନ୍ଦର ଚାନ୍ଦୁଆ, ଛତା, ନିଶାଣ ପ୍ରଭୃତି ତିଆରି କରନ୍ତି । ଉତ୍କୃଷ୍ଟ ସିଲାଇ କାମପାଇଁ ପିପିଲି ବହୁକାଳରୁ ବିଖ୍ୟାତ ।

ଏଠାରେ ଗୋଟିଏ ବଡ଼ ହାଟ ସପ୍ତାହରେ ଦୁଇଥର ବସେ । ଯେଉଁ ସ୍ଥାନରେ ହାଟ ବସେ, ସେଠାରେ କେତୋଟି ବଡ଼ ବଡ଼

ରହିଥିବାରୁ ସୂର୍ଯ୍ୟ ଉତ୍ତାପରୁ ଲୋକଙ୍କୁ ରକ୍ଷା ମିଳେ । ଜଳର ସୁବିଧା ପାଇଁ ଗୋଟିଏ କୂଅ ଓ ଗୋଟିଏ ପୁଷ୍କରିଣୀ ଅଛି । ପ୍ରତି ହାଟ ପାଳିରେ ମାଗଣାରେ ଔଷଧ ବଣ୍ଟାଯିବା ପାଇଁ ଗୋଟିଏ ଛୋଟ ଘର ମଧ୍ୟ ଅଛି । ହଇଜା ସମୟରେ ସେଠାରେ ହଇଜା ଟିକା ଦିଆଯାଏ ।



ଏଠାରେ କାରବାର ଖୁବ୍ ଭଲ ହୁଏ । ବେପାରୀମାନେ ସୁବିଧାରେ ବିକା କଣା କରିବା ଓ ଖରା ବର୍ଷାରୁ ରକ୍ଷା ପାଇବା ପାଇଁ ଧାଡ଼ି ଧାଡ଼ି ହୋଇ ଗୁଡ଼ିଏ ଚାଳଘର ତିଆରି କରାଯାଇଛି ।

ଠିକ୍ ଦ୍ୱିପ୍ରହର ବେଳକୁ ଆଖ ପାଖ ଗାଆଁମାନଙ୍କରୁ ପିମ୍ପୁଡ଼ି ଧାଡ଼ି ଲାଗିଲା ପରି ଲୋକେ ହାଟକୁ ଆସନ୍ତି । ନିକଟବର୍ତ୍ତୀ ଅଞ୍ଚଳରେ ଯେଉଁ ଫଳମୂଳ ପନିପରିବା ହୋଇଥାଏ ତା ଏଠାରେ ବିକ୍ରୀ ହୁଏ ।

ସମୟ ସମୟରେ ପୁରୀ ଆଉ କଟକ ଆଡ଼ୁ ବଲମୀ ଆମ୍ବ ଆସି ମଧ୍ୟ ବିକ୍ରୀ ହୁଏ ।

ପୁରୀ ଜିଲ୍ଲାର ନୂଆହାଟ ଓ ନରସିଂହପୁରରୁ ପ୍ରଚୁର ପରିମାଣରେ ପାନ କମାପଡ଼ା ବାଟେ ଏଠାକୁ ଆସେ ଓ ଏଠାରୁ ଗଡ଼ଜାତ ଓ ଅନ୍ୟାନ୍ୟ ସ୍ଥାନମାନଙ୍କୁ ମଧ୍ୟ ପଠାଯାଏ ।

ପୁରୀ ଓ ଭୁବନେଶ୍ୱରକୁ ପକ୍‌କା ସଡ଼କ ଥିବାରୁ ସହରର ବେପାରୀମାନେ ଆସି ବହୁ ପରିମାଣରେ ସଜ ପରିବା ମଟରରେ ଲଦ ଏହିଠାରୁ ନେଇଯାଆନ୍ତି । ସମୟ ସମୟରେ ଏହି ବେପାରୀ-ମାନଙ୍କ ଯୋଗୁଁ ପରିବା ଦର ବହୁତ ବଢିଯାଏ ।

ବଜାରରେ କେଉଁ ଜିନିଷ କେଉଁଠି ବିକ୍ରି ହେବ ତାର ଶୃଙ୍ଖଳା ନ ଥାଏ ମାତ୍ର ହାଟରେ ସେପରି ନ ହୋଇ କେଉଁ ପ୍ରକାର ଜିନିଷ କେଉଁଠି ବିକ୍ରି ହେବ, ଆଗରୁ ଠିକ୍ କରାଯାଇଥାଏ । ଗୁଡ଼ିଆ ଦୋକାନ, ମନୋହରୀ ଦୋକାନ, ପାନ ଦୋକାନ, ମସଲା ଦୋକାନ, ଲୁଗା ଦୋକାନମାନ ଗୋଟିଏ ଗୋଟିଏ ଧାଡ଼ରେ ବସିଥାନ୍ତି । ଏହାଦ୍ୱାରା କଣା ବିକାର ସୁବିଧା ହୁଏ ।

ଏଠାରେ ବହୁତ ଗୁଡ଼ିଆ ଦୋକାନ ବସେ; କିନ୍ତୁ ସେ ସବୁ ଦୋକାନର ଜଳଖିଆ କାଚ ଆଲମାରି ଭିତରେ ରହୁ ନ ଥିବାରୁ ମାଛି ବେଢ଼ୁଥାନ୍ତି । ମାଛି ବସିଥିବା ଜଳଖିଆ ଅଖାଦ୍ୟ ତଥାପି ଅନେକ ଲୋକ ବୁଝି ନ ପାରି ପଇସା ଦେଇ ରୋଗ କିଣି ନିଅନ୍ତି । ଏଥିପାଇଁ କେତେକ ଗୁଡ଼ିଅଙ୍କୁ ଜରିମାନା ହୋଇ ଥିବାରୁ ବର୍ତ୍ତମାନ ସେମାନେ ଆଉ ସେପରି କରୁନାହାନ୍ତି ।

ହାଟରେ ସ୍ଥାନୀୟ ଜିନିଷର କାରବାର ବେଶୀ ହୁଏ । ବାହାରୁ ଆସୁଥିବା ଜିନିଷର ଚାହିଁ କମ ହୁଏ । ପିପିଲି ଛଡ଼ା ଆଖପାଖରେ ଆଉ ବଜାର ନାହିଁ ।

ତେଣୁ ଲୋକେ ତାଙ୍କର ଦରକାରୀ ଜିନିଷ ହାଟରୁ ନେଇ ଅନ୍ୟ ପାଳି ପର୍ଯ୍ୟନ୍ତ ରଖି ଖର୍ଚ୍ଚ କରନ୍ତି ।

## ପ୍ରଶ୍ନ

୧ । ପିପିଲି କାହିଁକି ବିଖ୍ୟାତ ?

୨ । ହାଟ କପର ସ୍ଥାନରେ ବସିବା ଉଚିତ ଓ ପିପିଲି ହାଟରେ କପରି ସୁବିଧା ଅଛି ?

୩ । ହାଟରେ ବସୁଥିବା ଗୁଡ଼ିଆ ଦୋକାନମାନଙ୍କରୁ କାହିଁକି ଜିନିଷ ଖାଇବା ନାହିଁ ?

୪ । ଲୋକେ ରୋଗ କିଣି ନିଅନ୍ତି; ମାଛି ବସିଥିବା ଜଳଖିଆ ଅଖାଦ୍ୟ, ପିମ୍ପୁଡ଼ି ଧାଡ଼ି ପରି ଲୋକ ଆସନ୍ତି; ପ୍ରଭୃତି ବାକ୍ୟ-ଗୁଡ଼ିକର ଅର୍ଥ କଣ ?

---

## ସକାଳ ହେଲା

ରାତି ପାହି ହୋଇଲା ସକାଳ
ଲୁଚି ଗଲା ଅନ୍ଧାର
ପୂରୁବ ଦିଗେ କେ ବୋଳିଲା
ଯେତେ ଗୋଳା ସିନ୍ଦୂର ।
ସୁନା ଥାଳି ପରି ତପନ
ବାଣ୍ଟି ଦେଲା ଆଲୋକ,
ଗୃହ ଆଡ଼ ତୋଳି ଦେଖିଲା
ଉଡ଼େ ରାବିଲା କାକ ।

ବଣ ବଗିଚ୍ଚାରେ ଫୁଟିଲା
କେତେ ଜାତର ଫୁଲ,
ସୁଗନ୍ଧ ଘେନିଣ ପବନ
ବହେ କେଡ଼େ ଶୀତଳ ।
ପୋଖରୀ ମଝିରେ କମଳ
ଫୁଟି ଆନନ୍ଦଭରେ,
ପ୍ରଭାତ ପବନେ ଦୋଳଇ
ଧୀରେ ସୁନ୍ଦର ଜଳେ



ଝିଅ ପାହ୍ରି ହେଲା ସକାଳ
ଶୁଭେ ମନ୍ଦିରୁ ଘଣ୍ଟ,

ମାଆ ଡାକ ଦେଲେ ପିଲାଏ
ମୁହଁ ଧୋଇବ ଉଠ ।

ଉଠିଣ ବାଳକେ ଚଞ୍ଚଳ
ନିତ୍ୟ କରମ ସାରି
ଭୁଜା ଖାଇ ଗୁରୁଶାଳୀକୁ
ଯା'ନ୍ତି ଆନନ୍ଦେ ଚଳି ।

ଲୁଣ ଲଙ୍କା ଦେଇ ପଖାଳ—
ଭାତ କୃଷକ ଖାଇ,
ହରଷେ ଉଠାଏ ବଳଦ
ବଲେ, 'କୋଇଲି' ଗାଇ ।

ଅଧା ପେଟ ଖାଇ ପୋଷୁଛି
ସେ ତ ଏହି ଜଗତ,
ଭାବ ଦେଖ ଭାଇ କୃଷକ—
ପ୍ରାଣ କେଡ଼େ ମହତ ।

## ପ୍ରଶ୍ନ

୧ । ସକାଳ ହେଲେ ପୂର୍ବ ଦିଗ କପରି ଦେଖାଯାଏ ?

୨ । ତୁମେ ସକାଳେ କ' କ କାମ କର କହ ?

୩ । 'ଅଧାପେଟ ଖାଇ ପୋଷୁଛି ସେ ତ ଏହି ଜଗତ, ଭାବି ଦେଖ ଭାଇ କୃଷକ ପ୍ରାଣ କେଡ଼େ ମହତ' ଏହି ପଦ୍ୟାଂଶର ଭାବ ନିଜ କଥାରେ କହ ।

# ବାଜି ରାଉତ

ଗଡ଼ଜାତ ଅଞ୍ଚଳରେ ରାଜାମାନେ ପ୍ରଜାମାନଙ୍କ ଉପରେ ବଡ଼ ଅତ୍ୟାଚାର କରୁଥିଲେ । ଅଳ୍ପ ଦୋଷରେ, ଏପରି କି ବିନା ଦୋଷରେ ସେମାନଙ୍କୁ ଦଣ୍ଡ ଦେଉଥିଲେ । ପ୍ରଜାମାନେ ଦୁଃଖ କଷ୍ଟ ସହି ନ ପାରି ହଜାର ହଜାର ଏକାଠି ମିଳି ରାଜାଙ୍କ ବିରୁଦ୍ଧରେ ମେଣ୍ଟ ବାନ୍ଧିଲେ । ଏହି ମେଣ୍ଟର ନାମ ପ୍ରଜାମଣ୍ଡଳ ଓ ରାଜା କରୁଥିବା ଅନ୍ୟାୟ ବିରୁଦ୍ଧରେ ଲଢ଼ି ଜୀବନ ଦେବା ହେଲା ପ୍ରଜାମଣ୍ଡଳର କାମ ।

ବାର ବର୍ଷର ବାଳକ ବାଜି ରାଉତ ଏହି ପ୍ରଜାମଣ୍ଡଳରେ ନାମ ଲେଖାଇ ସଭାପତିଙ୍କ ପାଖକୁ ଆସି କହିଲା, "ବାବୁ, ମୁଁ ପ୍ରଜା-ମଣ୍ଡଳରେ ରହି କାମ କରିବି ।" ସଭାପତି ତାକୁ ପିଲା ଦେଖି ଟିକିଏ ହସି କହିଲେ, "ତୁ ତ ଏଡ଼େ ବିକଟେ ପିଲା, ତୁ କି କାମ କରିବୁ ରେ ? ତୋ ଘର କେଉଁଠି ?"

ବାଜି—ହସନ୍ତୁ ନାହିଁ ବାବୁ । ମୋର ଘର ଏହି ଢେଙ୍କାନାଳର ନୀଳକଣ୍ଠପୁର ଗ୍ରାମରେ । ଏହି ରାଜା ମୋର ସବୁ ଶେଷ କରି ଦେଇଛି । କେବଳ ମରିବାକୁ ମୋର ବାକି ଅଛି । ଖାଲି ପୋକ ମାଛି ପରି ନ ମରି ପ୍ରଜାମଣ୍ଡଳର କାମ କରି ମରିବା ଭଲ । ଛୋଟ ବୋଲି ଯାହା କହିଲେ ସତ, ମାତ୍ର ଧରମା ଭାଇ ତ ପୁଣି ଛୋଟ ହୋଇ କୋଣାର୍କ ଗଢ଼ିଥିଲା । ବୀର ଅଭିମନ୍ୟୁ ତ ଛୋଟବେଳେ ଏକୁଟିଆ ସାତଜଣ ବଡ଼ ବଡ଼ ବୀରଙ୍କ ସଙ୍ଗେ ଲଢ଼େଇ କରିଥିଲା ।

ସଭାପତି—(ଅଶ୍ରୁସିକ୍ତ ହୋଇ) ରାଜା ! ତୁ ପ୍ରଜାମଣ୍ଡଳରେ ରହିଲୁ ! ଆ, ଏଠାରେ ପ୍ରତିଜ୍ଞା କର, "ଦେଶ ପାଇଁ ଜୀବନ ଦେବ !"

ରାଜା—( ମୁଣ୍ଡ ନୁଆଁଇଲା)

( କିଛି ଦିନ ପରେ ଦିନେ ରାତିରେ ସଭାପତି ଶୋଇଛନ୍ତି—ରାଜା ଡାକିଲା ) ।

ରାଜା—ସଭାପତି ମହାଶୟ ! ସଭାପତି ମହାଶୟ ! ଟିକିଏ ଉଠନ୍ତୁ ।

ସଭାପତି—କିଏ ସେ ? ଏତେ ରାତିରେ କାହିଁକି ଡାକୁଛ ?

ରାଜା—ମୁଁ ରାଜା ।

ସଭାପତି—କି ରେ ରାଜା ! କଥା କ'ଣ ?

ରାଜା—ରଜାଘର ପୁଲିସ ଚନ୍ଦ୍ରପୁର ପ୍ରଜାମଣ୍ଡଳ ଉପରେ ଅତ୍ୟାଚାର କରିବାକୁ ବାହାରିଛନ୍ତି । ମୁଁ ଥାନା ପାଖ ଗଛମୂଳେ ବସି ସବୁ ଶୁଣି ଦଉଡ଼ି ଆସିଛି ଏଠାକୁ ।

ସଭାପତି—କ'ଣ କରିବା ? ମହା ବିପଦ ।

ରାଜା—ନଈ ଏ ପାରରେ ଡଙ୍ଗାଟା ଅଛି । ପୁଲିସ ସେ ଡଙ୍ଗାଟା ପାଇ ନଦୀ ପାର ହୋଇ ଗଲେ କଥା ସରିଯିବ ।

ସଭାପତି—ତେବେ ବର୍ତ୍ତମାନ ଉପାୟ ?

ରାଜା—ଉପାୟ ପାଞ୍ଚିବାକୁ ଆଉ ବେଳ ନାହିଁ । ସେ ଡଙ୍ଗାକୁ ମୁଁ ଆର ପାରିକୁ ନେଇ ବୁଲିଯିବ ।

ସଭାପତି—ଏ ଅନ୍ଧାର ରାତିରେ ତୁ ପିଲାଟାଏ ଡଙ୍ଗା ଆର ପାରିକୁ କପରି ନେବୁ ରେ ?

ବାଜି—ଆପଣ କ'ଣ କହୁଛନ୍ତି ? ମୁଁ ଓଡ଼ିଆ ପୁଅ, ଡଙ୍ଗା ବାହି ପାରିବ ନାହିଁ ? ଓଡ଼ିଆ ପୁଅ ପରା ଗଭୀର ସମୁଦ୍ରରେ ବୋଇତ ଚଳାଉଥିଲା । ଏତ ସାମାନ୍ୟ ନଈଟାଏ । ଯାଉଛି—ବେଳ ନାହିଁ—ନମସ୍କାର । (ପ୍ରସ୍ଥାନ)

(ନଈକୂଳରୁ ଡଙ୍ଗା ଫିଟାଇ ଆର ପାରିକୁ ନେବା ସମୟରେ)

ପୁଲିସ—ଘାଟରେ କିଏ ଅଛରେ ? ଡଙ୍ଗା ଆଣ, ଚଞ୍ଚଳ । ହେ ପିଲା । କାହ୍ନଟାଏ କରେ ? ଆରେ, ଆମେ ରଜା ଘର 'ପୋଲିସ' । ଶୀଘ୍ର ପାର କରି ଦେ ।

ବାଜି—ମୁଁ ନାଆଟା ସେ ପାରିରେ ରଖିବାକୁ ନେଉଛି ପରା ?.

ପୁଲିସ—ବଦମାସ । କଥା ମାନୁ ନାହୁଁ । ଦେଖିବୁ ?

ବାଜି—ଡରାଇଲେ ଏ ଡରିଯିବା ପିଲା ନୁହେ, ବାବୁ । ଡଙ୍ଗା ନେବାକୁ ପ୍ରଜାମଣ୍ଡଳର ଆଦେଶ ନାହିଁ ।

"ଜୟ ପ୍ରଜାମଣ୍ଡଳର ଜୟ ।"

ପୁଲିସ—ଆରେ, ଏଇଟା ତ ପ୍ରଜାମଣ୍ଡଳର ଲୋକ ରେ ! ଧର ! ଧର ! କିଏ ଅଛ ? ଚଞ୍ଚଳ ଧର । ହେ ଟୋକା । ତୋ ଜୀବନକୁ କ'ଣ ଭୟ ନାହିଁ ?

ବାଜି—ଭୟ ମୋର ଆଦୌ ନାହିଁ । ଯେଉଁ ଦିନୁ ତୋ ରଜା ମୋ ବାପା, ମା ଓ ଦୁଇ ଭଉଣୀଙ୍କୁ ହାତୀ ମଡ଼ାଇ ମାରି ଦେଇ ମୋତେ ଭିକ ମଗାଉଛି, ସେହିଦିନୁ ମୋର ଭୟ ଛାଡ଼ି ଯାଇଛି ।

ପୁଲିସ—ଆଉ ସହ୍ୟ ହେବ ନାହିଁ । ଚଳାଅ ଗୁଳି, ମୁହଁ ବନ୍ଦ ହୋଉଅଛି ନା ?

ବାଜି—ଭାଇମାନେ ! ସାବଧାନ ରହ । ରାଜା ଘର ପୁଲିସ ତୁମ୍ଭମାନଙ୍କୁ ବାନ୍ଧିବାକୁ ଯାଉଛନ୍ତି । ମୁଁ ଆଉ ବେଶୀ କହି ପାରୁ ନାହିଁ ।

ମୁଁ ମଲି ବୋଲି କେହି ମରଣକୁ ଡର ନାହିଁ । ସାହସ ଧର । ଯେ ଆମକୁ ମାରୁଛି, ତାର ବନ୍ଧୁକ ଆଗରେ ଛାତି ଫୁଲାଇ ଠିଆହୁଅ ।



( ଗୁଳି ମାଡ଼ ଖାଇ ବାଜି ତଳେ ପଡ଼ି କହିଲା)—ଏ ଦିନ ସବୁ ସବୁଦିନ ରହିବ ନାହିଁ । ପ୍ରଭୁ ନିଶ୍ଚୟ ସହାୟ ହେବେ ।

( ଜୟ ପ୍ରଜାମଣ୍ଡଳର ଜୟ )

## ପ୍ରଶ୍ନ

୧ । ପ୍ରଜାମଣ୍ଡଳର କାର୍ଯ୍ୟ କ'ଣ ?

୨ । ବାଜିରାଉତ ପରି କେତୋଟି ସାହସୀ ବାଳକଙ୍କ ନାମ କୁହ ?

୩ । ବାଜିରାଉତ ମଲେଣି, ତାଙ୍କୁ ଆମେ କାହିଁକି ଏତେ ଦିନ ଧାଏ ମନେ ରଖିଛୁ ?

୪ । ମେଣ୍ଟ, ଚଞ୍ଚଳ, ମଣ୍ଡଳ, ଅନ୍ୟାୟ, ଅତ୍ୟାଗ୍ରହ, ଗମ୍ଭୀର, ଏ ଶବ୍ଦ ଗୁଡ଼ିକର ଅର୍ଥ ନିଜ ଭାଷାରେ ଲେଖ ।

---

# ସତ କହିବାର ଫଳ

ଅନେକ ଦିନ ତଳେ ପାରସ୍ୟ ଦେଶରେ ଅବ୍ଦୁଲ୍ ନାମରେ ଜଣେ ଲୋକ ଥିଲା । ସେ ଜାତିରେ ମୁସଲମାନ୍ ।

ତାଙ୍କୁ ସତର ଅଠର ବର୍ଷ ହେବା ପର୍ଯ୍ୟନ୍ତ ସେ ଗାଈ ଚରଉ ଥିଲା । କିନ୍ତୁ ପିଲାଦିନରୁ ତାହାର ମନ ଧର୍ମ ଆଡ଼କୁ ଥିଲା । କିଛି ଦିନ ପରେ ସେ ଧର୍ମଶିକ୍ଷା କରିବାକୁ ବାଗ୍‌ଦାଦ ସହରକୁ ଯିବା ପାଇଁ ମାଆଙ୍କୁ କହିଲା । ସେତେବେଳକୁ ତାଙ୍କ ବାପା ମରିଯାଇଥାନ୍ତି ।

ମା ପୁଅକୁ ଆଦରରେ ପଠାଇଦେଲେ । ମାଆର ପାଖରେ କିଛି ସୁନା ମୋହର ଥିଲା । ସେଥିରୁ ବାଟଖର୍ଚ୍ଚ ପାଇଁ ସେ ଚାଳିଶଟି ମୋହର ଗୋଟିଏ କନ୍ଥାରେ ସିଲାଇ କରିଦେଲେ । ଶେଷରେ କହିଲେ "ଦେଖ ବାପା, ତୁ ଯୁଆଡ଼େ ଯା, ମୋର ଗୋଟିଏ କଥା ନିଶ୍ଚୟ ମାନିବୁ । ଯେତେ ବିପଦ ପଡ଼ୁ ସୁଦ୍ଧା ସର୍ବଦା ସତ୍ୟ କହିବୁ ।"

ଅବ୍ଦୁଲ ମା'ଙ୍କୁ ମୁଣ୍ଡିଆ ମାରି ବାଗ୍‌ଦାଦ୍ ସହର ଆଡ଼କୁ ଗଲା । କିଛି ଦୂର ଗଲା ପରେ ଗୋଟିଏ ବଡ଼ ଜଙ୍ଗଲ ପଡ଼ିଲା । କିନ୍ତୁ ଜଙ୍ଗଲ ଦେଖି ଅବ୍ଦୁଲା ମନରେ ଟିକିଏ ହେଲେ ଭୟ ନ ଥାଏ । ଜଙ୍ଗଲ ବାଟରେ ବାଗ୍‌ଦାଦକୁ ଯାଉଥିବା କେତେଗୁଡ଼ିଏ

ବାଟୋଈଙ୍କ ସହିତ ତାହାର ଭେଟ ହେଲା । ସମସ୍ତେ ମିଳିମିଶି ଗ୍ଲଲେ ।

ସେମାନେ ଅଳ୍ପଦୂର ଯାଇଛନ୍ତି, ଦଳେ ଡକାଏତ ସେହି ଜଙ୍ଗଲ ଭିତରୁ ବାହାରିଲେ । ବାଟୋଈଙ୍କ ସଂଖ୍ୟାଠାରୁ ଡକାଏତଙ୍କ ସଂଖ୍ୟା ବଳିପଡ଼ିଲା । ଡକାଏତମାନେ ବାଟୋଈଙ୍କଠାରୁ ଟଙ୍କା-ଟୋକର ଯାହା ଥିଲା ସବୁ ଛଡ଼ାଇ ନେଲେ । ଅବ୍‌ଦୁଲ୍‌କୁ ଅତି ଗରିବ ବିଗ୍ଲରି ଡକାଏତମାନେ କିଛି ପଗ୍ଲରିଲେ ନାହିଁ ।

ବଟୋଈଙ୍କଠାରୁ ସବୁ ନେଇ ସାରି ଜଣେ ଅବ୍‌ଦୁଲ୍‌କୁ ପଗ୍ଲରିଲା "ହଇରେ, ତୋ ପାଖରେ କ'ଣ ମାଲମତା କିଛି ଅଛି ?"

ଅବ୍‌ଦୁଲ୍ ସଙ୍ଗେ ସଙ୍ଗେ କହିଲା, "ମୋ ପାଖରେ ୪୦ଟି ମାତ୍ର ସୁନା ମୋହର ଅଛି ।"

ଯାହା ପାଖରେ ଟଙ୍କା ପଇସା ଥାଏ, ସେ ଚୋରଙ୍କୁ କଦାପି କହେ ନାହିଁ । ତେଣୁ ଅବ୍‌ଦୁଲ୍ କଥାରେ ଡକାଏତଟିର ବିଶ୍ୱାସ ହେଲା ନାହିଁ । ସେ ମନେକଲା, ଅବ୍‌ଦୁଲ୍ ତା ସହିତ ଥଟ୍ଟା କରୁଛି ।

ତହୁଁ ଡକାଏତଟି ଯାଇ ତାଙ୍କ ସର୍ଦ୍ଦାରକୁ ଅବ୍‌ଦୁଲ୍ କଥା କହିଲା । ସଙ୍ଗେ ସଙ୍ଗେ ସର୍ଦ୍ଦାର ଅବ୍‌ଦୁଲ୍‌କୁ ଡାକି ପଗ୍ଲରିଲା "କିରେ, ସେ ଗ୍ଲଳିଶଟି ମୋହର କାହିଁ ?"

ଅବ୍‌ଦୁଲ୍ ନିଜର କନ୍ଥାଟି ଦେଖାଇ କହିଲା, "କେହି ଦେଖି ନପାରିଲା ଭଳି ଏହାରି ଭିତରେ ମୋ ମା ସିଲେଇ କରି ଦେଇଛନ୍ତି ।"

ସର୍ଦ୍ଦାର ସଙ୍ଗେ ସଙ୍ଗେ କନ୍ଥାଟି କାଟି ଗ୍ଲଳିଶଟି ମୋହର ଦେଖି ଅବ୍‌ଦୁଲ୍‌କୁ କହିଲା, "ତୋ ପରି ମୂର୍ଖ ଏ ସଂସାରରେ

କେହି ନାହିଁ । ଡକାଏତଙ୍କୁ ନିଜ ଟଙ୍କା ପଇସା ରଖିବା ଯାଗା ଯେ ବତାଇ ଦିଏ, ସେ ବଡ଼ ଓଲୁ ।"

ଅବ୍‌ଦୁଲ କହିଲା, "ମୁଁ ସବୁ ଜାଣେ, ମାତ୍ର ମୋର ମା କହିଛନ୍ତି, 'ଜୀବନ ପଛକେ ଯିବ କଦାପି ମିଛ କହିବୁ ନାହିଁ ।' ମୁଁ ମୋ ପାଖରେ କିଛି ନାହିଁ ବୋଲି କହିବ କପରି ?"

ଗୋଟିଏ ଛୋଟ ପିଲାଠାରୁ ଏପରି କଥା ଶୁଣି ସର୍ଦ୍ଦାରର ଜ୍ଞାନ ଆସିଲା । ସେ ଅବ୍‌ଦୁଲର ପାଦତଳେ ପଡ଼ି କହିଲା "ଭାଇ, ତୁମେ ଏଡ଼େ ବିପଦରେ ପଡ଼ି ସୁଦ୍ଧା ମାଆଙ୍କ ଆଦେଶ ପାଳୁଛ, ଆଉ ମୁଁ ଭଗବାନଙ୍କ ଆଦେଶ ନ ମାନି ନିରୀହ ଲୋକମାନଙ୍କୁ କଷ୍ଟ ଦେଉଛି । ନା, ଆଜିଠାରୁ ଏ ହୀନ କାର୍ଯ୍ୟ ଆଉ କରିବ ନାହିଁ ।"

ଅବ୍‌ଦୁଲ ତାକୁ ଟେକି ଉଠାଇ କହିଲା, "ତୁମେ ଏ କାମ ଛାଡ଼ିଦିଅ । ଈଶ୍ୱର ତୁମକୁ କ୍ଷମା ଦେବେ ।"

ଡକାଏତମାନେ ସଙ୍ଗେ ସଙ୍ଗେ ବାଟୋଇମାନଙ୍କ ଜିନିଷ ଫେରାଇଦେଲେ ଓ ସେହି ଦିନଠାରୁ ଲୋକମାନଙ୍କ ସେବା କରିବାରେ ମନ ଦେଲେ ।

## ପ୍ରଶ୍ନ

୧ । ତୁମ୍ଭେ ଏ ଗପଟି ପଢ଼ି କ'ଣ ଶିଖିଲ ?

୨ । ଜଣେ ଅବ୍‌ଦୁଲ, ଜଣେ ସର୍ଦ୍ଦାର ହୋଇ ତାଙ୍କ ଭିତରେ ଯାହା କଥାଭାଷା ହୋଇଥିଲା କହ ।

୩ । ନିମ୍ନଲିଖିତ ଶବ୍ଦମାନଙ୍କର ବିପରୀତ ଅର୍ଥ ଲେଖ—
ଜୀବନ, ସମ୍ପଦ, ସତ, ବିଶ୍ୱାସ ।

# ଆସାମ ଭୂମିକମ୍ପ

ଆମ ଭାରତ ବର୍ଷରେ ଆସାମ ବୋଲି ଗୋଟିଏ ପ୍ରଦେଶ ଅଛି । ଗଲାବର୍ଷ ସେଠାରେ ଗୋଟିଏ ଭୟଙ୍କର ଭୂମିକମ୍ପ ହୋଇ ସେ ପ୍ରଦେଶର ଅନେକ ଅଞ୍ଚଳ ଛାରଖାର କରିଦେଇଛି ।

ପୃଥିବୀର ଅନେକ ସ୍ଥାନରେ ଭୂମିକମ୍ପ ହୁଏ । ଭୂମିକମ୍ପ ହେଲେ ଘରଦ୍ୱାର ଭାଙ୍ଗିପଡ଼େ, ଅନେକ ଲୋକ ମରିଯାନ୍ତି । ଆସାମ ଭୂମିକମ୍ପରେ ଯାହା କ୍ଷତି ହୋଇଛି, ତାହା ଶୁଣିଲେ ଦେହ ଥରିଉଠେ । ଭାରତବର୍ଷରେ ଏପରି ଭୂମିକମ୍ପ ଖୁବ୍ କମ ହୋଇଛି ।

ଉଣେଇଶ ଶହ ପଚାଶ ମସିହା ସେପ୍ଟେମ୍ବର ପନ୍ଦର ତାରିଖ ଦିନ ପ୍ରଥମେ ଗୋଟାଏ ଭୟଙ୍କର ଶବ୍ଦ ଶୁଣାଗଲା । ତାପରେ ଭୂଇଁ ଆସ୍ତେ ଆସ୍ତେ ଥରିବାକୁ ଲାଗିଲା । ଲୋକମାନେ ଭୂମିକମ୍ପ ହେବା



ଜାଣି ଘର ଛାଡ଼ି କୁଆଡ଼େ ପଳାଇବାକୁ ଲାଗିଲେ । କିନ୍ତୁ କୁଆଡ଼େ ବା ଯିବେ ? ଭୂଇଁ ଖୁବ୍ ଜୋରରେ କମ୍ପିବାରୁ କେହୁ

ସ୍ଥିର ହୋଇ ରହି ନ ପାରି ଗଛ କାଟିଲା ପରି କଚୁଡ଼ି ହୋଇ ପଡ଼ିଲେ ।

ଏ ବିପଦରେ ଅନ୍ୟ ଉପାୟ ନ ଦେଖି ସମସ୍ତେ ଭଗବାନଙ୍କୁ ଡାକୁଥାନ୍ତି । କ୍ରମେ କମ୍ପ ବେଶୀ ହେବାରୁ ବଡ଼ ବଡ଼ ପକ୍କା, ସୁନ୍ଦର ସୁନ୍ଦର ମନ୍ଦିର ଓ ମସ୍‌ଜିଦ୍‌ମାନ ଭାଙ୍ଗିପଡ଼ିଲା । ଶହ ଶହ ଲୋକ, ଗୋରୁ ଗାଈ ସେହି ଘର ତଳେ ଚାପି ହୋଇ ପ୍ରାଣ ହରାଇଲେ । ସମସ୍ତେ ନିଜ ନିଜର ଜୀବନ ରକ୍ଷିବା ପାଇଁ ବ୍ୟସ୍ତ ହୋଇ ପଡ଼ିଲେ ।

ଭୂମିକମ୍ପ ଯୋଗୁଁ କୂଅ ପୋଖରୀରୁ ପାଣି କୁଆଡ଼େ ଉଭେଇଗଲା । ପଡ଼ିଆରେ ସ୍ଥାନେ ସ୍ଥାନେ ଭୂଇଁ ଫାଟିଯାଇ ସେଥିରୁ ପାଣିର ସୁଅ ବହିଲା । ଭୂମିକମ୍ପ ହେବାରୁ ଆସାମର ବ୍ରହ୍ମପୁତ୍ର ପ୍ରଭୃତି ବଡ଼ବଡ଼ ନଈମାନ ଉଛୁଳିବାରୁ ପାଣି ବଢ଼ି ଚାରିଆଡ଼ ବୁଡ଼ାଇ ଦେଲା । ସେଥିରେ ଅନେକ ଲୋକ ଓ ଗୋରୁ ଗାଈ ମଲେ । ବଡ଼ ବଡ଼ ପାହାଡ଼ମାନ ଉପୁଡ଼ି ପଡ଼ି ନଈ ଭିତରେ ପଡ଼ିଯିବାରୁ ନଈର ସୁଅ ବାଧା ପାଇଲା ଓ ଅନ୍ୟଆଡ଼େ ମାଡ଼ିଯାଇ ବହୁତ କ୍ଷତି କଲା ।

ନଈ ଭିତରୁ ମାଛମାନେ ଶୁଖିଲାରେ ପଡ଼ିଲେ । ହାତୀ, ଗଣ୍ଡା ପ୍ରଭୃତି ବଡ଼ ବଡ଼ ବନ୍ୟଜୀବ ନଦୀ ସ୍ରୋତରେ ଭାସିଗଲେ । ଫସଲ ସମ୍ପୂର୍ଣ୍ଣରୂପେ ନଷ୍ଟ ହୋଇଗଲା । ଯେଉଁମାନେ ପ୍ରାଣ ଯେନି ରହିଲେ, ସେମାନେ ଖାଇବାକୁ ନ ପାଇ ଛଟପଟ ହେଲେ ।

ଭୂମିକମ୍ପ ବନ୍ଦ ହେବାରୁ ଦେଖାଗଲା, ଚାରିଆଡ଼ ମାଟିଗଦା ଓ ମୁର୍ଦ୍ଦାରେ ପୂର୍ଣ୍ଣ ହୋଇଯାଇଛି । ମଣିଷ ଓ ଜୀବଜନ୍ତୁ ପଚିବାରୁ ଭୟଙ୍କର ଦୁର୍ଗନ୍ଧ ହେଲା । ବହୁ କଷ୍ଟରେ ସରକାର ମାଟିତଳୁ ମୁର୍ଦ୍ଦାର କଢ଼ାଇ ସେ ଅଞ୍ଚଳକୁ ସଫା କଲେ; ଯେଉଁମାନେ ଭାଗ୍ୟକୁ

ବର୍ଣ୍ଣି ରହିଥିଲେ ସେମାନଙ୍କ ସୁବିଧାରେ ରଖାଯାଇ ସେମାନଙ୍କର ଖାଇବା ପିଇବା କଥା ବୁଝିଲେ । ଉଡ଼ାଜାହାଜରେ ତଳକୁ ଖାଦ୍ୟ ଜିନିଷ ପକାଇ ଦିଆଯାଉଥିଲା । କାରଣ ଭୂମିକମ୍ପ ଯୋଗେ ରେଲ୍ ମଟର ରାସ୍ତା ଖରାପ ହୋଇଯାଇଥିଲା ।

ଖବରକାଗଜରେ ଆସାମ ଭୂମିକମ୍ପର ଦୁଃଖକାହାଣୀ ବାହାରିଲା । ସମସ୍ତେ ନିଜ ନିଜ ଶକ୍ତି ଅନୁସାରେ ସାହାଯ୍ୟ ପଠାଇଲେ ସେହି ସାହାଯ୍ୟ ଟଙ୍କା ସହିତ ଆଉଟଙ୍କା ମିଶାଇ ସରକାର ସେମାନଙ୍କ ପାଇଁ ଘର ତୋଳାଇ ଦେଲେ ।

ଭୂମିକମ୍ପ ଦେଶରେ ଗୋଟିଏ ବଡ଼ ବିପଦ । ଈଶ୍ବରଙ୍କ ନିକଟରେ ପ୍ରାର୍ଥନା ଆଉ କେବେ କେଉଁଠି ଏପରି ଭୂମିକମ୍ପ ନ ହେଉ ।

## ପ୍ରଶ୍ନ

୧ । ଭୂମିକମ୍ପ କାହିଁକି ହୁଏ ?

୨ । ଆସାମ ଭୂମିକମ୍ପରେ କ'ଣ କ୍ଷତି ହୋଇଥିଲା, ବର୍ଣ୍ଣନା କର ।

୩ । 'ଭୂମିକମ୍ପ ଦେଶରେ ଗୋଟିଏ ବିପଦ'—ଏ କଥାରୁ କ'ଣ ବୁଝିଲ ?

ସଜାଇ ଲେଖ—

(କ) ପକାଇ ଦିଆଯାଉଥିଲା ଖାଦ୍ୟ ଜିନିଷ ଉଡ଼ାଜାହାଜରେ ତଳକୁ ।

(ଖ) ସାହାଯ୍ୟ ନିଜ ନିଜ ପଠାଇଲେ ଶକ୍ତି ଅନୁସାରେ ।

(ଗ) ହୋଇଯାଇଥିଲା ଭୂମିକମ୍ପ ଯୋଗେ ଖସ୍ତ୍ରପ ରେଲ ମନ୍ତର ରାସ୍ତା ।

୪ । ସରକାର ଭୂମିକମ୍ପ ହେଉଥିବା ଅଞ୍ଚଳକୁ କପର ଭାବରେ ସାହାଯ୍ୟ କରିଥିଲେ ।

---

## ସୀତା ଠାବ

ଶିଂଶପା ବୃକ୍ଷର ଡାଳେ
ହନୁ ମନେ ମନେ ଭାଳେ
ନିଶ୍ଚୟ ଜାନକୀ ଜନକ-ନନ୍ଦନୀ
ଦେଖିଲଇଁ ବେନ ଡୋଳେ
କି ଭାଗ୍ୟବଳେ ।

× × × ×

ବନ୍ଧୁ କି ନ କରେ ପୁଣି
ଶ୍ରୀରାମଚନ୍ଦ୍ର ଘରଣୀ
ଅସୁର ପୁରେ ଅସୁରୀ ଜଗିଛନ୍ତି
ଜଗତର ଠାକୁରାଣୀ
ରମଣୀମଣି !

ହନୁ ବୋଲଇ ଗୋ ମାତ,
ଶ୍ରୀରାମଚନ୍ଦ୍ରଙ୍କ ଦୂତ
ଏମନ୍ତ କହିଣ ଚରଣ ତଳରେ
ପଡ଼ିଲା ଯାଇଁ ତୁରିତ
ସେ ରାମ ଦୂତ ।

× × × ×

ସମୁଦ୍ର ଡେଇଁ ଅଇଲି,
ଲଙ୍କା ଗଡ଼ରେ ପଶିଲି,
ତୁମ୍ଭ ଶ୍ରୀଚରଣ ଦର୍ଶନ ନ ପାଇ
ପ୍ରାଣ ମୁଁ ହରାଉଥିଲି
ଭଲ ଦେଖିଲି ।

× × × ×

ଆସ ମୋର କନ୍ଧେ ବସ
ଦେନିଯିବି ରାମ ପାଶ
ରାବଣ ସହିତେ ମାରନ୍ତୁ, ପ୍ରଭୁଙ୍କ
ପ୍ରତିଜ୍ଞା ହୋଇବ ନାଶ

୰ ବିଶ୍ୱନାଥ ଖୁଣ୍ଟିଆ

## ପ୍ରଶ୍ନ

୧ । ହନୁ ଶିଂଶପା ଗଛର ଡାଳରେ ବସି କ'ଣ ଭାବିଲା ?

୨ । ହନୁ ସୀତାଙ୍କୁ ଭେଟି କ'ଣ କହିଲା ?

୩ । ତୁରିତ, ଚରଣ, ଭଲ, ପ୍ରତିଜ୍ଞା—ଲଗାଇ ଗୋଟିଏ ଗୋଟିଏ ବାକ୍ୟ ଗଢ଼ ।

# ବାଳିକାର ଦାନ

ୟୁରୋପ ମହାଦେଶର ଫ୍ରାନ୍‌ସ ରାଜ୍ୟରେ ବହୁତ ଦିନ ପୂର୍ବେ ନେପୋଲିଅନ ବୋଲି ଜଣେ ରାଜାଥିଲେ । ସେ ସମୁଦାୟ ପୃଥିବୀ ଜୟ କରିବାକୁ ବାହାରିଲେ । ଏ କଥା ଦେଖି ଅନ୍ୟ ରାଜ୍ୟର ରାଜାମାନଙ୍କ ମନରେ ଭୟ ହେଲା । ସମସ୍ତେ ଯୁଦ୍ଧ ପାଇଁ ପ୍ରସ୍ତୁତ ହେବାକୁ ଲାଗିଲେ । ରାଜ୍ୟ ସାରା ଯୁଦ୍ଧ ଚାନ୍ଦା ଆଦାୟ କରାଗଲା । ଯେ ଯାହାର ଶକ୍ତି ଅନୁସାରେ ଯୁଦ୍ଧ ପାଣ୍ଠିକୁ ସାହାଯ୍ୟ କଲେ ।

ଜର୍ମାନୀ ଦେଶରେ ଗୋଟିଏ ବାଳିକା ଥିଲା । ତାର ବାପ ମା ଆଗରୁ ମରିଯାଇଥାନ୍ତି । ସେ ବଡ଼ କଷ୍ଟରେ ଚଳୁଥାଏ । ଯୁଦ୍ଧ ଚାନ୍ଦା ଦେବାକୁ ତା ପାଖରେ କିଛି ନଥିଲା । ସେ ଭାବିଲା, "ଦେଶର ଉପକାର ପାଇଁ ଭିକାରୀ ମଧ୍ୟ ଦାନ କରୁଛି, ମୁଁ ତ କିଛି ଦେଇ ପାରୁ ନାହିଁ । କ'ଣ କରିବ ? କିପରି କିଛି ହେଲେ ସାହାଯ୍ୟ କରନ୍ତି ।

ଏହିପରି ଭାବୁ ଭାବୁ ତା ମୁଣ୍ଡରେ ଥିବା ସୁନ୍ଦର ବାଳତକ କଥା ତା ମନେ ପଡ଼ିଗଲା । ସେ ଆନନ୍ଦରେ ଡେଇଁ ଡେଇଁ ଯାଇ ବାରିକକୁ କହିଲା"ଦେଖ, ମୋ ମୁଣ୍ଡରେ ଅନେକ ଗୁଡ଼ାଏ ସୁନ୍ଦର ବାଳ ଅଛି । ତୁମେ ଏ ବାଳତକ ନେଇ ମୋତେ କିଛି ପଇସା ଦିଅ ।"

ବାଳିକାଟିର କଥା ଶୁଣି ବାରିକ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ତୁମର ପଇସା ଏପରି କ'ଣ ଦରକାର ଅଛି ଯେ, ତୁମେ ତୁମ ମୁଣ୍ଡର ଏହି ସୁନ୍ଦର ବାଳଗୁଡ଼ିକ ବିକି କରିଦେବ ? ତୁମ ମୁଣ୍ଡର

ବାଳଗୁଡ଼ିକ କାଟି ନେଲେ ତୁମେ କେଡ଼େ ଅସୁନ୍ଦର ଦେଖାଯିବ ଭାବୁଛ ତ ?"

ସଙ୍ଗେ ସଙ୍ଗେ ବାଳିକାଟି କହିଲା "ହଁ, ତା ମୁଁ ବେଶ୍ ଭାବୁଛି । ଦେଶର ଉପକାର ପାଇଁ ମୁଁ ଜୀବନ ମଧ୍ୟ ଦେଇପାରେ । ତୁମେ କ'ଣ ଜାଣ ନାହିଁ ବର୍ତ୍ତମାନ ସମସ୍ତେ ଯୁଦ୍ଧ ପାଇଁ ଚାନ୍ଦା ଦେଉଛନ୍ତି ? ଚାନ୍ଦା ଦେବାକୁ ମୋ ପାଖରେ ପଇସାଟିଏ ନାହିଁ ବୋଲି ମୋ ମନରେ ଭାରି ଦୁଃଖ ହେଉଛି । ଏହି ଦେଶରେ ମୋର ଜନ୍ମ, ଦେଶର ସଂକଟବେଳେ ମୁଁ ଅବଶ୍ୟ ଦେଶକୁ ସାହାଯ୍ୟ କରିବ । ଏ ବାଳଗୁଡ଼ିକ ବିକି ଯାହା ପାଇବି ତାକୁ ଯୁଦ୍ଧ ଚାନ୍ଦା ସ୍ୱରୂପ ଦେବି ।"



ଗୋଟିଏ ବାଳିକାର ଦେଶପ୍ରତି ଏପରି ସ୍ନେହ ଦେଖି ବାରିକ ଅତ୍ୟନ୍ତ ଆନନ୍ଦିତ ହୋଇ ବାଳଗୁଡ଼ିକ ରଖିଲା ଓ ତାକୁ କିଛି ପଇସା ଦେଲା । ପଇସାତକ ପାଇ ବାଳିକାଟି ସଙ୍ଗେ ସଙ୍ଗେ ଯୁଦ୍ଧପାଣ୍ଠିରେ ଦେଇ ଆସିଲା ।

ଜଣେ ବାଳିକାର ଦେଶପ୍ରତି ଏପରି ମମତା ଦେଖି ବୀରକର ମନ ବଦଳିଗଲା । ସେ ସେହି ଦିନଠାରୁ ଦେଶର ସେବାରେ ଲାଗି ପଡ଼ିଲା ।

## ପ୍ରଶ୍ନ

୧ । ଯୁଦ୍ଧପାଣ୍ଡିକୁ ସାହାଯ୍ୟ କାହିଁକି ଦିଆଯାଏ ?

୨ । ବାଳିକା କିପରି ଭାବରେ ଯୁଦ୍ଧପାଣ୍ଡିକୁ ସାହାଯ୍ୟ କରିଥିଲା ?

୩ । ଶୂନ୍ୟସ୍ଥାନ ପୂରଣ କର:—

(କ) ଯୁଦ୍ଧପାଣ୍ଡିକୁ—ତା ପାଖରେ—ନ ଥିଲା ।

(ଖ) ଏହି ଦେଶରେ ମୋର— ।

(ଗ) ସେ ସେହି ଦିନଠାରୁ ଦେଶର—ଲାଗି ପଡ଼ିଲା ।

---

# ଦିଲ୍ଲୀ ସହର

ଆଗେ କଲିକତା ଭାରତବର୍ଷର ରାଜଧାନୀ ଥିଲା । ବର୍ତ୍ତମାନ ଦିଲ୍ଲୀ ଆମ ଭାରତର ରାଜଧାନୀ ଅଟେ ।

ଅତି ପ୍ରାଚୀନ କାଳରେ ମହାରାଜା ଯୁଧିଷ୍ଠିର ଏହି ଦିଲ୍ଲୀରେ ରାଜତ୍ୱ କରୁଥିଲେ । ସେତେବେଳେ ଏହାର ନାମ ଇନ୍ଦ୍ରପ୍ରସ୍ଥ ଥିଲା । ମୋଗଲ ସମ୍ରାଟମାନେ ମଧ୍ୟ ଏହି ଦିଲ୍ଲୀରେ ରାଜତ୍ୱ କରୁଥିଲେ ।

ଏଠାରେ ଗୋଟିଏ ବଡ଼ ଦୁର୍ଗ ଅଛି । ତାକୁ ଲାଲକିଲ୍ଲା କହନ୍ତି । ଏତେ ବଡ଼ ଦୁର୍ଗ ଆଉ ଭାରତବର୍ଷରେ ନାହିଁ । ଏହା ଠିକ୍ ଯମୁନା ନଈ କୂଳରେ । ଏହି ଦୁର୍ଗ ଭିତରେ ମୋଗଲ ସମ୍ରାଟମାନେ ଶଙ୍ଖମଲମଲ ପଥରରେ ଖୁବ୍ ସୁନ୍ଦର ସୁନ୍ଦର ଘର ତୋଳାଇ ରହୁଥିଲେ । ସେଗୁଡ଼ିକ ଆଜିପର୍ଯ୍ୟନ୍ତ ନୂଆ ପରି ଦିଶୁଛି ।

ଏହି କିଲ୍ଲା ଭିତରେ ଜୁମ୍ମା ନାମରେ ଗୋଟିଏ ମସ୍‌ଜିଦ୍ ବା ପ୍ରାର୍ଥନା ଗୃହ ଅଛି । ଆଗେ ମୁସଲମାନ ସମ୍ରାଟମାନେ ଏଠାରେ ପ୍ରାର୍ଥନା କରୁଥିଲେ । ପୃଥିବୀରେ ଏଡ଼େ ବଡ଼ ମସ୍‌ଜିଦ୍ ଆଉ କେଉଁଠାରେ ନାହିଁ । ବର୍ତ୍ତମାନ ଲାଲକିଲ୍ଲା ଥିବା ଅଞ୍ଚଳକୁ ପୁରୁଣା ଦିଲ୍ଲୀ କହନ୍ତି ।

ନୂଆଦିଲ୍ଲୀ ବର୍ତ୍ତମାନ ଆମ ଭାରତର ରାଜଧାନୀ । ଏହା ପୁରୁଣା ଦିଲ୍ଲୀଠାରୁ ଦେଢ଼ ମାଇଲ ଦୂର । ସରକାର ବହୁ ଅର୍ଥ ବ୍ୟୟ କରି ଅଠର ବର୍ଷରେ ଏହି ସହର ତିଆରି କରାଇଥିଲେ । ସହରଟି ଦେଖିବାକୁ ଖୁବ୍ ସୁନ୍ଦର । ଏହାର ରାସ୍ତାଗୁଡ଼ିକ ଖୁବ୍ ପରିଷ୍କାର ଓ ଓସାରିଆ । ସବୁବେଳେ ରାସ୍ତା ଉପରେ ଟ୍ରାମ, ମଟର ଘୋଡ଼ା ଗାଡ଼ି, ରିକ୍‌ସାର ଭିଡ଼ ଲାଗିଥାଏ । ବୁଲିକରି ଯିବାପାଇଁ ସେହି ରାସ୍ତାର ଦୁଇ କଡ଼ରେ ଦୁଇଟି ରାସ୍ତା ଅଛି । ଏକ କଡ଼ ରାସ୍ତାରେ ଲୋକେ କେବଳ ପାଦରେ ବୁଲିକରି ଯାଆନ୍ତି । କୌଣସି ଯାନ ଏ ବାଟରେ ଯାଇପାରେ ନାହିଁ । ସବୁ ବଡ଼ ବଡ଼ ସହରରେ ଏପରି ରାସ୍ତା ଅଛି ।

ଏହି ସହରରେ ପ୍ରତ୍ୟେକ ଗଳି କନ୍ଦିକୁ ମଧ୍ୟ ବିଜୁଳି ଆଲୁଅ ଲାଗିଛି । ରାତିରେ ସହରଟି ବିଜୁଳି ଆଲୁଅରେ ହସି ଉଠେ । ସହରର ପ୍ରତ୍ୟେକ ଘରକୁ ପାଣିକଳ ଅଛି ।

ଏ ସ୍ଥାନର ଲୋକମାନଙ୍କର ପ୍ରଧାନ ଭାଷା ହିନ୍ଦୁସ୍ଥାନୀ । ଆମ ଓଡ଼ିଆଭାଷା ଏଠାରେ ପ୍ରାୟ କେହି ବୁଝିପାରନ୍ତି ନାହିଁ । ଖାଲି ଓଡ଼ିଆଭାଷା ଜାଣିଥିବା ଲୋକ ଏଠାରେ ଆଦୌ ଚଳି ପାରିବ ନାହିଁ ।

ଆମ ଓଡ଼ିଶାର ଅଧିକାଂଶ ଲୋକ ଧୋତି ଓ ଗାମୁଛା ବ୍ୟବହାର କରନ୍ତି, କିନ୍ତୁ ଏଠାରେ ଅଧିକାଂଶ ଲୋକ ପାଇଜାମା ଓ କାମିଜ ବ୍ୟବହାର କରନ୍ତି । ଖୁବ୍ କମ୍ ଲୋକ ଧୋତି ପିନ୍ଧିବାର ଦେଖାଯାଏ ।

ଆମ ଦେଶ ଲୋକଙ୍କର ଭାତ ଡାଲି ପ୍ରଧାନ ଖାଦ୍ୟ, ମାତ୍ର ଏ ସ୍ଥାନର ଲୋକଙ୍କର ରୁଟି ତରକାରି ପ୍ରଧାନ ଖାଦ୍ୟ । ଏ ଅଞ୍ଚଳରେ ଧାନ ଫସଲ ହୁଏ ନାହିଁ, ଗହମ ହୁଏ ।



ଦିଲ୍ଲୀର ସଭାପତି ରହିବା ପାଇଁ ଗୋଟିଏ ସୁନ୍ଦର କୋଠା ଅଛି । ଏପରି ସୁନ୍ଦର କୋଠା ପୃଥିବୀରେ ଖୁବ୍ କମ୍ ଦେଖାଯାଏ । ସେ କୋଠାର ସାଜସଜ୍ଜା ଏଡ଼େ ଚମତ୍କାର ଯେ, ଦେଖିଲେ ମନ ଆନନ୍ଦରେ ପୂର୍ଣ୍ଣ ହୋଇଯାଏ ।

ସଭାପତିଙ୍କ କୋଠି ନିକଟରେ ବ୍ୟବସ୍ଥାପକ ସଭାଘର । ଏହି ସଭା ଘରଟି ଗୋଲାକାର ହୋଇ ତିଆରି ହୋଇଛି । ଏହାର

ସ୍ତମ୍ଭପଟ୍ଟେ ବହୁତଗୁଡ଼ିଏ ସୁନ୍ଦର ସୁନ୍ଦର ଖମ୍ବ ଅଛି । ପୃଥିବୀର ସ୍ଥାନଆଡ଼ୁ ସୁନ୍ଦର ସୁନ୍ଦର ଫୁଲଗଛ ଅଣାଯାଇ ଏଠାରେ ବଗିଚା କରାଯାଇଛି । ଏହି ବଗିଚାକୁ କଳ-ଝରଣାମାନ ଖଞ୍ଜା ହୋଇଛି । ଏହି କଳଝରଣାକୁ ଖୋଲି ଦେଲେ ବଗିଚାରେ ବର୍ଷା ହେଲା ପରି ପାଣି ପଡ଼େ । ଉଡ଼ାଜାହାଜରେ ବସି ବଡ଼ଲାଟ କୋଠି ଓ ଏହି ସହରଘର ଦେଖିଲେ ଖୁବ୍ ସୁନ୍ଦର ଦେଖାଯାଏ । ଆମ୍ଭ ପୁରୁଣା କଟକ ସହରରେ ଯେପରି ଘରଗୁଡ଼ିକ ଲଗାଲଗି ହୋଇ ତିଆରି ହୋଇଛି, ଏଠାରେ ସେହିପରି ହୋଇନାହିଁ । ଏହି ସହରର ପ୍ରତ୍ୟେକ ଘର ପ୍ରତ୍ୟେକ ଘରଠାରୁ ଓ ପ୍ରତି ଘର ସ୍ଥାନପାଖରେ ପାଚେରି ଅଛି ।

ଏଠାରେ ଗୋଟିଏ ବଡ଼ ଯାଦୁଘର ଅଛି । ବହୁତ ସ୍କୁଲ୍, କଲେଜ, କଚେରୀ, ଡାକ୍ତରଖାନାରେ ସହରଟି ପୂର୍ଣ୍ଣ । ଏଠାରେ ବହୁତ ଦେଖିବାର ଜିନିସ ଅଛି । ଖାଲି ବହି ପଢ଼ିଲେ ଦିଲ୍ଲୀ ସହର କେଡ଼େ ସୁନ୍ଦର ଜ୍ଞାନହେବ ନାହିଁ । ତୁମେ ବଡ଼ ହେଲେ ଥରେ ଆସି ଭାରତର ଏହି ପ୍ରଧାନ ସହରଟି ଦେଖିଯିବ, ତାହାହେଲେ ଜାଣି ପାରିବ, ଏହା କେଡ଼େ ସୁନ୍ଦର ।

## ପ୍ରଶ୍ନ

୧ । ବର୍ତ୍ତମାନ ଭାରତର ରାଜଧାନୀର ନାମ କହ ।

୨ । ଦିଲ୍ଲୀ ସହରର ରାସ୍ତା କପରି ବର୍ଣ୍ଣନା କର ।

୩ । ଲାଲକିଲ୍ଲାରେ କେଉଁ ମସ୍‌ଜିଦ୍ ଅଛି ? ବଡ଼ଲାଟଙ୍କ ଭବନ ସମ୍ବନ୍ଧରେ ଯାହା ଜାଣ କହ ।

୪ । ଗଳି, କନ୍ଦ, ରାଜସଭା, ଖଞ୍ଜା, ଭିଡ଼ ପ୍ରାର୍ଥନା—ଏହି ଶବ୍ଦ ଲଗାଇ ବାକ୍ୟ ଗଢ଼ ।

# ଅନ୍ଧ ଭିକାରୀ

ଅନ୍ଧ ଭିକାରୀଟି ଯାଉଅଛି ପଥେ,
ଝିଅ ତାର ଚଲେ ତା ସହିତେ ।
ହୋଇଅଛି ବୁଢ଼ା, ପାଚିଛି ତା ବାଳ,
ଚାଲିବାକୁ ଦେହେ ନାହିଁ ତାର ବଳ ।
ଥିଲେ ଭାଇ, ଭାର୍ଯ୍ୟା, ପୁଅ ପରିବାର
ଗୋଟି ଗୋଟି ହୋଇ ଗଲେ ଯମପୁର ।



ଝିଅଟି କଢ଼ାଏ ପଥ ହୋଇ ସାହା,
ସଂସାରେ ନ କରେ କେହି ତାକୁ ଆହା ।
ମାସରୁ ପଚିଶ ଦିନ ଉପବାସ
ରହିବା ତାହାର ହୋଇଛି ଅଭ୍ୟାସ ।
ରାସ୍ତା କଡ଼େ ଦେଖି ଧନୀକ ଆବାସ
ଆହାର ମିଳିବ ହେଲା ତା' ବିଶ୍ୱାସ ।

ନାରୀ ଏକ ଦେଖି ସଦର ଦୁଆରେ
ଝିଅ ନିଜ ଦୁଃଖ କହେ ଆର୍ତ୍ତସ୍ୱରେ ।
ତିନି ଦିନ ହେଲା ଉପାସିଆ ମାଆ
ଗଣ୍ଡେ ଭାତ ପାଇଁ ହେଉ ତତେ ଦୟା ।
ଦେଖି ଭିକାରୀର କୁତ୍ସିତ ଶରୀର
ଧରଣୀ ହୋଇଲେ ରାଗେ ଜର ଜର;
ବୋଇଲେ ଏ ନୁହେଁ ଠାକୁର ମନ୍ଦିର
ଏଠି ଦିଆ ହୁଏ ନାହିଁ ତ ଛତର ।
ପ୍ରତିଦିନ ଆସି ଏଥୁ ପଲ ପଲ
ଆମକୁ ଶେଷରେ କରିବେ କାଙ୍ଗାଳ ।
ଫେରିଯାଅ ଭଲେ କହୁଛି ତୁମକୁ
କେତେ ତୁମ ଛାତି ଉଠିଲ ପିଣ୍ଡାକୁ ।
ଶୋକେ ଭୟେ ହୋଇ କାତର ନିତାନ୍ତ
ବାହୁଡ଼ିଲା ଅନ୍ଧ ଧରି ଝିଅ ହାତ ।
ଜଳୁଅଛି ପେଟ ଉପାସେ ଝିଅର
ଅଦୂରେ ଦେଖିଲା ଅଇଁଠା ପତ୍ରର ।
କୁକୁର ମୁହଁରୁ ଆଣିଲା ଛଡ଼ାଇ
ମାତ୍ର ଆଶା ତାର ନ ମେଣ୍ଟିଲା ତହିଁ ।
ଜାଣି ବୁଢ଼ା ହୀନ ଅବସ୍ଥା ଝିଅର
ଝରଇ ନୟନୁ ଝର ଝର ନୀର ।
ପାଖ ଭଙ୍ଗା ଘରୁ ଦେଖିଥିଲା ନାରୀ
ଦୟାରେ ତା ହୃଦ ଆସିଲା ତରଳି ।
ସେ ଅତି ଦୁଃଖିନୀ ନାହିଁ ତା ସମ୍ବଳ
କି ଦେଇ ତୋଷିବ ଅତିଥି ଯୁଗଳ ।

ତଥାପି ଅଧୀରେ ଆସିଲ୍ଲ ଦଉଡ଼ି
ଧର ବସାଇଲ୍ଲ ଛୁଣ୍ଡା ଘଟି ପାରୁ ।
ନିଜ ପାଇଁ ରଖିଥିଲ୍ଲ ଯେତକ ଯାହା
ପତର ପକାଇ ବାଢ଼ିଦେଲ୍ଲ ତାହା ।
ଭୁଞ୍ଜି ବାପ ଝିଅ ଗଲେ ଧନ୍ୟ ଧର
ଅନ୍ଧ କହେ ପ୍ରଭୁ ! ଧନ୍ୟ ଏହି ନାରୀ ।
ଦୁଃଖୀ ପାଇଁ ଯିନା ଦୁଃଖୀର ଅନ୍ତର
କଷ୍ଟପଟ ହୁଏ, ନୁହେ ଧନକର ।

## ପ୍ରଶ୍ନ

୧ । ଶେଷ ପଦର ଭାବ ନିଜ ଭାଷାରେ କହ ।
୨ । ସଦର ଦୁଆରେ ଠିଆ ହୋଇଥିବା ନାରୀ ବା ଭଙ୍ଗା ଘରର ନାରୀ କଏ ଭିକାରୀ ପ୍ରତି ଭଲ ବ୍ୟବହାର ଦେଖାଇଲ୍ଲ ?
୩ । ସ୍ତ୍ରୀ, ଫେରିଲ୍ଲ, ବାଟ, ଅନ୍ୟ, ବଡ଼ଲୋକ—ଏହି ଶବ୍ଦଗୁଡ଼ିକରୁ କଏ ତଳେ ଲେଖା ଯାଇଥିବା କେଉଁ ଶବ୍ଦର ଅର୍ଥ ?
ନାରୀ, ରାସ୍ତା, ବାହୁଡ଼ିଲ୍ଲ , ଧନିକ, ଅପର ପ୍ରଭୃତି ।

---

# ରେଲ ଭ୍ରମଣ

ଗଲ୍ଲ ଗ୍ରୀଷ୍ମଛୁଟିରେ ସାକ୍ଷୀଗୋପାଳ ଯିବାପାଇଁ ଭାଇ ଓ ମୁଁ ବାହାରିଲୁଁ । ଲୁଗାପଟା ପିନ୍ଧି ଟ୍ରଙ୍କରେ ବାକି ଆବଶ୍ୟକ ଲୁଗା ଜାମା ପ୍ରଭୃତି ରଖି ଖଣ୍ଡିଏ ରିକ୍‌ସା ଗାଡ଼ିରେ ବସି ଷ୍ଟେସନରେ ଆସି ପହଞ୍ଚିଲୁ । ସେତେବେଳକୁ ଗାଡ଼ି ଆସିବା ସମୟ ହୋଇନଥାଏ । ଭାଇ ସଙ୍ଗେ ସଙ୍ଗେ ଟିକେଟ କରି ଆଣିଲେ । ଗାଡ଼ି ଆସି ପ୍ଲାଟଫର୍ମରେ

ଠିଆ ହେଲୁ । ଆମେ ତର ତର ହୋଇ କେତେ ଲୋକଙ୍କୁ ଠେଲି ପେଲି ଗୋଟିଏ ଡବାରେ ପଶିଲୁ । ଉପର ବେଞ୍ଚରେ ଟ୍ରଙ୍କଟି ରଖି



ତଳ ବେଞ୍ଚରେ ବସିଲୁ । ଝାଡ଼ା ଯିବା ଓ ପରିସ୍ରା କରିବା ପାଇଁ ଡବା ଭିତରେ ଯେଉଁ ପାଇଖାନା ଅଛି, ତାହା ମୋତେ ଭାଇ ଦେଖାଇ ଦେଲେ ।

ସିଟି ଦେଇ ଗାଡ଼ି ଚାଲିଲା । କିଛି ସମୟ ପରେ ବାରଙ୍ଗ ଷ୍ଟେସନ୍‌ଠାରେ ଗାଡ଼ି ରହିଲା । ସେଠାରେ ବଡ଼ ବଡ଼ ଟାବଲ୍ ସବୁ ଗଦା ହୋଇଥାଏ । ସେ ଗୁଡ଼ିକ କଣ ବୋଲି ପଚାରିବାରୁ ଭାଇ କହିଲେ, "ଅଗରେ ଦେଖା ଯାଉଥିବା ଘର ଗୋଟିଏ କାଚ କାରଖାନା । ସେହି କାରଖାନାରେ ତିଆରି କାଚ ଜିନିଷ ଗୁଡ଼ିକ ଟାବଲରେ ଭର୍ତ୍ତି ହୋଇ ଦୂର ଆଡ଼କୁ ପଠାଯିବା ପାଇଁ ଏଠାରେ ରଖାଯାଇଛି । ଆମ ଓଡ଼ିଶାର ଏକ ପ୍ରଧାନ କାଚ କାରଖାନା ଏହି ବାରଙ୍ଗଠାରେ ଅଛି ।"

ପୁଣି ଗାଡ଼ି ଚାଲିବାକୁ ଆରମ୍ଭ କଲା । ଚାରିଆଡ଼େ ସୁନ୍ଦର ସୁନ୍ଦର ଦୃଶ୍ୟ ଦେଖି ମୋତେ ଭାରି ଆନନ୍ଦ ଲାଗୁଥାଏ । ତା ପରେ ପଡ଼ିଲା ଭୁବନେଶ୍ବର ଷ୍ଟେସନ । ଗାଡ଼ି ରହିଲା । ଏହି ଷ୍ଟେସନଟିରେ ଅଖାରେ ବନ୍ଧା ହୋଇ ବହୁତ ବାସନ ଗଦା ହୋଇ ରହିଥାଏ । ପଚାରି ବୁଝିଲି, ବାଲକାଟି ଓ ବଇରିଆ ଗ୍ରାମରେ ସୁନ୍ଦର ସୁନ୍ଦର କଂସା ବାସନ ତିଆରି ହୋଇ ଏହି ଷ୍ଟେସନରୁ କଲିକତା ଯାଏ ।

ଏହିପରି କଥାବାର୍ତ୍ତା ହେଉ ହେଉ ଗାଡ଼ି ଚାଲିଲା । ଦୂରରୁ ଉଡ଼ାଜାହାଜ ପଡ଼ିଆ ଓ ନୂଆ ରାଜଧାନୀର କୋଠାସବୁ ବଡ଼ ସୁନ୍ଦର ଦେଖା ଯାଉଥାଏ । କେତେକ ସମୟ ପରେ ଗାଡ଼ି ଯାଇ ଗୋଟାଏ ବଡ଼ ଷ୍ଟେସନରେ ରହିଲା । ମୁଁ ପଚାରିବାରୁ ଭାଇ କହିଲେ, "ଏ ଖୋର୍ଦ୍ଧାରୋଡ଼ ଷ୍ଟେସନ । ଏହାକୁ ଜଙ୍କସନ ମଧ୍ୟ କହନ୍ତି । ଏଠାରେ ଅନେକ ସମୟ ଗାଡ଼ି ରହିବ । ଆମେ ଯେଉଁ ରେଲ ରାସ୍ତାରେ ଆସୁଥାଇଁ, ସେହି ରାସ୍ତାଟି ସିଧା ମାନ୍ଦ୍ରାଜ ଆଡ଼କୁ ଯାଇଅଛି । ଏଠାରୁ ଗୋଟିଏ ଶାଖା ସାକ୍ଷୀଗୋପାଳ ଦେଇ ପୁରୀ ପର୍ଯ୍ୟନ୍ତ ଯାଇଛି । ସେଇ ରାସ୍ତାରେ ଆମେ ଯିବା । ମାନ୍ଦ୍ରାଜ ଆଡ଼କୁ ଗଲେ ବାଟରେ ଓଡ଼ିଶାର ସୁନ୍ଦର ହ୍ରଦ ଚିଲିକା ଦେଖିବାକୁ ମିଳିଥାନ୍ତା । ଆରବର୍ଷ ଚିଲିକା ଆଡ଼େ ବୁଲିଯିବା ।" ଏହି ଜଙ୍କସନଠାରୁ ଖୋର୍ଦ୍ଧା, ନୟାଗଡ଼, ରଣପୁର ଆଡ଼କୁ ପକ୍କା ସଡ଼କମାନ ପଡ଼ିଥିବାର ଭାଇ ମୋତେ କହିଲେ ।

ପ୍ରାୟ ଅଧ ଘଣ୍ଟାଏ ପରେ ଗାଡ଼ି ଚାଲିଲା । ତା ପରେ ଡେଲାଙ୍ଗ ବୋଲି ଗୋଟିଏ ଛୋଟ ଷ୍ଟେସନ ପଡ଼ିଲା । ଏହି ଷ୍ଟେସନରେ ଶହଶହ ଧାନ ବସ୍ତା ଗଦା ହୋଇଥାଏ । ପଚାରି ବୁଝିଲି ଆଖପାଖ ଅଞ୍ଚଳରୁ ବହୁ ପରିମାଣରେ ଧାନ ଓ ରବି ଶସ୍ୟ ଏଠାରୁ ଅନ୍ୟ ଆଡ଼କୁ ପଠାଯାଏ ।

ଗାଡ଼ି ଡେଲାଙ୍ଗ ଷ୍ଟେସନ ଛାଡ଼ିଲା । କେତେବେଳେ ସାକ୍ଷୀଗୋପାଳ ହେବ ବୋଲି ମୋ ମନ ଛଟପଟ ହେଉଥାଏ । ମୁଁ ନାନା କଥା ପଚାରି ଭାଇଙ୍କୁ ବ୍ୟସ୍ତ କରି ପକାଉଥାଏ । ଏମିତି ଗପସପ ହେଉ ହେଉ ଗାଡ଼ି ସାକ୍ଷୀଗୋପାଳ ଷ୍ଟେସନରେ ରହିବାରୁ ଆମେ ଗାଡ଼ିରୁ ଓହ୍ଲାଇଲୁ । ସେଠାରେ ପର୍ବତ ପରି ନଡ଼ିଆ ଗଦା ମରୁଥାଏ । ପଚାରି ବୁଝିଲି, ଏ ଅଞ୍ଚଳରେ ନଡ଼ିଆ ଖୁବ୍ ଭଲ ହୁଏ ।

ଏଠାରୁ ନଡ଼ିଆ ଓ କତା ରେଲରେ ବାହାର ସ୍ଥାନକୁ ପଠାଯାଏ । ଷ୍ଟେସନରୁ ଆସି ଭାଇ ଓ ମୁଁ ଦୁହେଁଯାକ ସିଧା ମନ୍ଦିର ଆଡ଼କୁ ଗଲୁ । ଠାକୁରଙ୍କ ଧୂପବେଳ ହୋଇ ନ ଥାଏ । ମନ୍ଦିର ଭିତରକୁ ଯାଇ ଗୋପୀନାଥଙ୍କ ମୂର୍ତ୍ତି ଦେଖି ମୋର ମନ ଆନନ୍ଦରେ ପୂର୍ଣ୍ଣ ହୋଇଗଲା । ସାକ୍ଷୀଗୋପାଳ ନିକଟରେ ଶ୍ରୀରାଧାଙ୍କ ମୂର୍ତ୍ତି ଦେଖିଲି ।

ତା ପରେ ମନ୍ଦିର ପଛ ଆଡ଼କୁ ଗଲୁ । ସେଠାରେ ବଉଳ ଓ କୁରୁଅନାର ବଣ ଭିତରେ ସିମେଣ୍ଟର ଚଉତରା, ବେଞ୍ଚ, ଚଉକି ଦେଖି ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ଭାଇଙ୍କୁ ପଚାରିବାରୁ ସେ କହିଲେ, "ଏଠାରେ ପାଠପଢ଼ା ହୁଏ । ମହାତ୍ମା ଗୋପବନ୍ଧୁ ଏହି ବନବିଦ୍ୟାଳୟ ବସାଇଥିଲେ । ଖୁବ୍ ବଡ଼ ପଣ୍ଡିତମାନେ ଏଠାରେ ଶିକ୍ଷକ ଥିଲେ ଓ ଏହା ଓଡ଼ିଶାର ସର୍ବଶ୍ରେଷ୍ଠ ବିଦ୍ୟାଳୟ ଥିଲା ।" ଏହି ବଣରେ ଗୋଟିଏ ପାଖରେ ଗୋପବନ୍ଧୁଙ୍କର ସମାଧି ଦେଖି ଆମେ ମୁଣ୍ଡିଆ ମାରିଲୁ ।

ରାତିରେ ସାକ୍ଷୀଗୋପାଳ ହାଇସ୍କୁଲରେ ରହି ପୁଣି ସକାଳୁ କଟକ ବାହାରି ଆସିଲୁ ।

୧ । କଟକରୁ ସାକ୍ଷୀଗୋପାଳକୁ ରେଲଗାଡ଼ିରେ ଗଲେ କେଉଁ କେଉଁ ଷ୍ଟେସନରେ କି କି ଜିନିଷ ଦେଖିବ ?

୨ । ମନ୍ଦିର ଓ ଗ୍ରାମଟିର ନାମ କାହିଁକି ସାକ୍ଷୀଗୋପାଳ ହୋଇଛି ?

୩ । ବନବିଦ୍ୟାଳୟର ସ୍ଥାପନକର୍ତ୍ତା କିଏ ?

୪ । ଧୂପ, ସମାଧି, ଜଙ୍କସନ, ଦୃଶ୍ୟର ଅର୍ଥ ଲେଖ ଓ ଏହି ଶବ୍ଦ ଲଗାଇ ବାକ୍ୟ ଗଢ଼ ।

---

## କପାର ନିଜକଥା

ଦିନେ ବଣରେ ବୃକ୍ଷମାନଙ୍କର ଗୋଟିଏ ସଭା ହେଲା । ଛୋଟ ବଡ଼ ଅନେକ ଗଛ ଆସିଥିଲେ । କେଉଁ ଗଛ ମନୁଷ୍ୟର ବେଶି ଉପକାର କରେ, ଏଇକଥା ଆଲୋଚନା ହେବାର ଥାଏ । ବରଗଛ ସଭାପତି ହୋଇଥିଲା ।

ସଭା ଆରମ୍ଭ ହେଲା । ତା ପରେ ଗଛଗୁଡ଼ିକ ଜଣ ଜଣ ହୋଇ ନିଜ ନିଜ କଥା ବଖାଣି ବସିଲେ ।

ପ୍ରଥମେ ଆମ୍ବ ଠିଆ ହୋଇ କହିଲା, "ମୁଁ ମନୁଷ୍ୟର ବେଶି ଉପକାର କରେ । ମୋ ଫଳ ମନୁଷ୍ୟର ବଡ଼ ପ୍ରିୟ ଖାଦ୍ୟ । କବିରାଜି ଶାସ୍ତ୍ରରେ ଅଛି, ଲକ୍ଷେ ପାଚିଲା ଆମ୍ବ ଖାଇ ଜୀର୍ଣ୍ଣ କରିପାରିଲେ, ବୃଦ୍ଧ ବି ଯୁବକ ପରି ହୋଇ ପାରିବ । ପୁଣି ମୋର ଛାଇ ଓ କାଠ ମନୁଷ୍ୟ ସର୍ବଦା ଆବଶ୍ୟକ କରେ ।"

ତା ପରେ ଉଠିଲା ନଡ଼ିଆ । ସେ କହିଲା, "ମୁଁ ଫଳମାନଙ୍କ ମଧ୍ୟରେ ଶ୍ରେଷ୍ଠ । ତେଣୁ ମୋତେ କେହି କେହି ଶ୍ରୀଫଳ ବୋଲି କହନ୍ତି । ମୁଁ ମନୁଷ୍ୟର ସବୁ କାମରେ ଲାଗେ । ଶୁଣିବ, ସାହେବମାନେ ଏ ଦେଶକୁ ଆସି ମୋର ଫଳ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ତାଙ୍କ ରାଇଜକୁ ଯାଇ କହିଲେ, 'ଭାରତରେ ଏପରି ଗୋଟିଏ ଗଛ ଅଛି ଯହିଁରେ ରୁଟି, ଦୁଧ ଓ ପାଣି ଏକାଠି ଫଳେ ।' ମୋ ଦେହର ଖୋଷା, ଚଅଁର, ଗଣ୍ଡି, ଚେର ଓ ମୂଳ କେଉଁଟି ଯେ ମନୁଷ୍ୟର ଉପକାରରେ ନ ଆସେ କହି ହେବ ନାହିଁ ।"

ବେଲ ଉଠି କହିଲା, "ମୁଁ ମହାଦେବଙ୍କର ପ୍ରିୟ, ମଣିଷ କଥା କ'ଣ କହିବ ? ମୋ ଫଳ ମନୁଷ୍ୟର ନାନା ରୋଗ ନାଶ କରେ । ମୋ ପନା ଅଭ୍ୟାସ କରି ପ୍ରତିଦିନ ଖାଇଲେ ଖାଦ୍ୟ ଭଲ ଭାବରେ ଜୀର୍ଣ୍ଣ ହୋଇ ଦେହର ଉପକାର କରେ । ନଡ଼ିଆର ନୁହେଁ, ମୋର ନାମ ଶ୍ରୀଫଳ ।"

ଏହିପରି ଜାମୁ, ତେନ୍ତୁଳି, କରଞ୍ଜ ପ୍ରଭୃତି କେତେକ ଗଛ କହି ସାରିବା ପରେ କପା ଗଛ ଠିଆ ହେଲା । ତାକୁ ଆକାରରେ ଛୋଟ ଦେଖି ଅନ୍ୟ ଗଛମାନେ ମନେ ମନେ ହସୁଥାନ୍ତି ।

କପା ଗଛ ଆରମ୍ଭ କଲା, "ସଭାପତି ମହାଶୟ, ମୁଁ ଗୋଟିଏ ଛୋଟ ଗଛ । କିନ୍ତୁ ମୋ ବିନା ମନୁଷ୍ୟ ଆଦୌ ଚଳି ପାରନ୍ତି ନାହିଁ ।

"ପ୍ରଥମେ ମୁଁ ଗୋଟିଏ ଗଜା ହୋଇ ବାହାରର ପାଣି ପବନ ଆଲୋକ ପାଇ ଶୀଘ୍ର ଶୀଘ୍ର ବଢ଼ିଲି । ମୋ ଦେହରୁ ସାନ ସାନ ଡାଳଗୁଡ଼ିକ ବାହାରି ଖୁବ୍ ସୁନ୍ଦର ଦେଖାଗଲା ।

"କିଛି ଦିନ ପରେ ମୋ ଦେହରେ ହଳଦିଆ ଫୁଲ ଫୁଟିଲା । କେତେ ଜାତିର ପ୍ରଜାପତି ଆସି ମୋ ସହିତ ଖେଳିଲେ । ଏପରି ଆନନ୍ଦରେ କେତୋଟି ଦିନ କଟି ଯିବା ପରେ ଫୁଲଗୁଡ଼ିକ ଶୁଖି ଝଡ଼ିପଡ଼ିଲା । ଫଳଗୁଡ଼ିଏ ଦେହଯାକ ମଣ୍ଡି ହୋଇଗଲା ।

"ଅଳ୍ପଦିନ ପରେ ସେହି ଫଳଗୁଡ଼ିକ ଶୁଖିଯାଇ ଫାଟିଗଲା । ତା ଭିତରୁ ଧୋବ ଫର ଫର ତୂଳା ବାହାରି ହୋଇ ପଡ଼ିଲା । ଲୋକମାନେ ଦେଖି ତାକୁ ଘରକୁ ନେଇଗଲେ । ମୋର ଜନ୍ମ ବଣ ଜଙ୍ଗଲରେ । ଏହାପରେ ପରେ ଗାଁ ଗହଳକୁ ଗଲି । ଲୋକମାନେ ମୋତେ ବଡ଼ ଆଦରରେ ରଖିଥାନ୍ତି । କିପରି ମୁଁ ଲୋକଙ୍କ ଉପକାରରେ ଲାଗିବି ସର୍ବଦା ଚିନ୍ତା କରୁଥାଏଁ ।



"ଦିନେ ଲୋକମାନେ ମୋର ସେହି ତୂଳାକୁ ବଲଣା କଲେ । ମୋ ମନରେ ଟିକିଏ ହେଲେ ଦୁଃଖ ହେଉ ନ ଥାଏ । ତା ପରେ ସେଇ ବଲଣାକୁ ଧରି ଅରଟରେ ସୂତା କାଟିଲେ ।

"ସୂତା ହୋଇ ସାରିବା ପରେ ମୋତେ ଜଣେ ଲୋକ ନେଇ ତୋରାଣି ହାଣ୍ଡିରେ ବୁଡ଼ାଇ ଖୁବ୍ ଚକଟିଲା । ସେଥିରେ ଭାତର ମଣ୍ଡ ବି ବୋଳିଲା । ଏପରି ମୁଁ ଖୁବ୍ ଟାଣ ହୋଇ ବୁଣାଯିବାକୁ ଲୁଗା ତିଆରି ହେଲା । ଏଇ ଲୁଗା ହେଲା ମୋର ନୂଆରୂପ । ମୋତେ

ସମସ୍ତେ ଖୁବ୍ ଆଦର କଲେ । ଭାବିଲି, ମୋର ଆଉ କିଛି ଦୁଃଖ ନାହିଁ ।

"କିନ୍ତୁ ଅଳ୍ପ ଦିନ ଯାଇଛି କି ନାହିଁ ମୋତେ ପୁଣି ଗରମ ପାଣିରେ ପକାଇ ପଥର ଉପରେ ପିଟିଲେ । ଥରକୁ ଥର ଏହିପରି ମାଡ଼ ଖାଇ ମୁଁ ଆଉ ସହିପାରିଲି ନାହିଁ । ମୋର ବଳ ଭାଙ୍ଗିଗଲା । ବଳଥିବା ଯାକେ ଖୁବ୍ ଆଦର ପାଉଥିଲି । ଯେମିତି ବଳ ତୁଟିଲା ମୋତେ କେହି ପଚାରିଲେ ନାହିଁ । ମୁଁ ଗୋଟିଏ କଣରେ ପଡ଼ି ମନେ ମନେ ଭାବୁଥାଏ; ଆଉ କଣ ମନୁଷ୍ୟର କିଛି ଉପକାର କରିପାରିବି ନାହିଁ । ଏଇଠି କ'ଣ ପଡ଼ି ପଡ଼ି ମୋ ଦିନ ସରିଯିବ ?

"ଠିକ୍ ଏତିକିବେଳେ ବୋହୂଟିଏ ଆସି ମୋତେ ନେଇ ଟିକି ଟିକି କରି ଚିରିଲା; ନିଜ ହାତରେ ଭଲି ଭଳିତା କଲା । ତେଲରେ ବୁଡ଼ାଇ ମୋ ମୁହଁରେ ଟିକିଏ ନିଆଁ ଲଗାଇ, ନେଇ ଠାକୁର ମୂଳରେ ଥୋଇ ମୁଣ୍ଡିଆ ମାରିଲା । ସେତେବେଳେ ମୋର ଭାରି ଆନନ୍ଦ । ତା ପରେ ମୁଁ ପୋଡ଼ି ପାଉଁଶ ହୋଇ ପବନରେ ଉଡ଼ିଗଲି । ମୋ କାମ ଏତିକିରେ ଶେଷ ହେଲା ।"

ସମସ୍ତେ କପାର କଥା ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ । ସେ ଦିନର ସଭା ସରିଲା । ସମସ୍ତେ କପାକୁ ପ୍ରଶଂସା କଲେ ।

## ପରୀକ୍ଷା

୧ । ଦୁଇଟି ଉପକାରୀ ଗଛର ନାମ କହ ?

୨ । କପାରେ କେତେ ପ୍ରକାର ଲୁଗା ତିଆରି ହେବାର ଦେଖିଛ ? ତାହାର ନାମ କହ ।

୩ । କପା ଗଛରୁ ସୂତା ବାହାର କରିବାଠାରୁ ଆରମ୍ଭ କରି ଲୁଗା ହେବା ପର୍ଯ୍ୟନ୍ତ ସବୁ ବିଷୟ ନିଜ କଥାରେ ଲେଖ ?

# ପିଇବା ପାଣି

ମୀର—ବାପା ! ପାଣି ନ ପିଇଲେ ଆମର କି କ୍ଷତି ହେବ ?

ବାପା—ଶୋଷ ହୋଇ ଆମ୍ଭେମାନେ ମରିଯିବା । ଖାଦ୍ୟ ନ ଖାଇ ମଣିଷ କିଛି ଦିନ ବଞ୍ଚିପାରେ, କିନ୍ତୁ ପାଣି ନ ପିଇଲେ ମନୁଷ୍ୟ ଅଳ୍ପ କେତେଦିନ ବଞ୍ଚିପାରିବ ନାହିଁ । ଖାଲି ମନୁଷ୍ୟ ନୁହଁ, ପାଣି ବିନା ଜୀବଜନ୍ତୁ, ଗଛଲତା କେହି ବଞ୍ଚି ପାରିବେ ନାହିଁ ! ତେଣୁ ପାଣିର ଆଉ ଗୋଟିଏ ନାମ ଜୀବନ । ପାଣି ଆମର ଜୀବନ ରଖେ । ପୁଣି ସେହି ପାଣି ଯଦି ଦୂଷିତ ହୋଇ ଆମ ପେଟ ଭିତରକୁ ଯାଏ, ତାହାହେଲେ ଅଳ୍ପକେ ଆମ ଜୀବନ ନେଇଯାଏ । ତେଣୁ ପିଇବା ପାଣି ପାଇଁ ଆମର ଖୁବ୍ ସାବଧାନ ହେବା ଦରକାର । ଦୂଷିତ ଜଳରେ ହଇଜା, ମେଲେରିଆ, କୃମି, 'ଟାଇଫଏଡ଼' (ଆନ୍ତ୍ରିକ ଜ୍ୱର) ପ୍ରଭୃତି ରୋଗର ଜୀବାଣୁ ଲୁଚି ରହିଥାନ୍ତି । ଆମେ ସେହି ପାଣିକୁ ପିଇଲେ ଆମକୁ ନାନା ରୋଗ ଧରେ ।

ମୀର—ପାଣି ଭିତରେ ତ କାହିଁ ଜୀବାଣୁ ଦେଖାଯାନ୍ତି ନାହିଁ ? କୂଅ ପାଣିତ ଖୁବ୍ ସଫା ଦେଖାଯାଏ । ସେଥିରେ ଆଉ ଜୀବାଣୁ ରହିଲେ କପରି ?

ବାପା—କୂଅ ପାଣି ସଫା ଦେଖାଯାଏ ସତ, କିନ୍ତୁ ସେଥିରେ ଯେ ଜୀବାଣୁ ନାହାନ୍ତି ଏ କଥା ଠିକ୍ ରୂପେ କହି ହେବ ନାହିଁ । ଏ ରୋଗ ଜୀବାଣୁ ଗୁଡ଼ିକ ଏତେ ଛୋଟ ଯେ ଖାଲି ଆଖିରେ ଦେଖାଯାନ୍ତି ନାହିଁ ।

ମୀର—ତେବେ ଜୀବାଣୁ ଅଛନ୍ତି ବୋଲି କପରି ଜାଣିବ ?

ବାପା—'ଅଣୁବୀକ୍ଷଣ' ବୋଲି ଗୋଟିଏ ଯନ୍ତ୍ର ଅଛି, ସେଥିରେ ଅତି ଛୋଟ ଜିନିଷ ବଡ଼ ହୋଇ ଦେଖାଯାଏ । ସେହି ଯନ୍ତ୍ରରେ ପାଣିକୁ ପରୀକ୍ଷା କଲେ ଅନେକ ଛୋଟ ଛୋଟ ଜୀବାଣୁ ଦେଖାଯାଏ ।



ମୀର—ପାଣି ଦୂଷିତ ହୁଏ କପରି ?

ବାପା—ତୁ ତ ଜାଣିଛୁ, କେବଳ କୂଅରୁ ସମସ୍ତେ ପାଣି ପିଇବାକୁ ପାଆନ୍ତି ନାହିଁ । କେହି କେହି ନଈ, ପୋଖରୀ ବା ଚୁଅରୁ ପାଣି ନେଇ ପିଅନ୍ତି ।

ମୀର—ହଁ ଆମ ଗାଁ ନନ୍ଦଘର ଭୋଇ ସାହିରେ ପରା ସମସ୍ତେ ଚନ୍ଦନ ପୋଖରୀରୁ ପାଣି ନେଇ ପିଅନ୍ତି । କୂଅ ତ ନାହିଁ, ଆଉ ପାଣି କେଉଁଠୁ ଆଣିବେ ?

ବାପା—ମୁଁ ତ ସେହିକଥା କହୁଛି । ନଈ ପୋଖରୀର ପାଣି କପରି ଦୂଷିତ ହୁଏ, କହୁଛି ଶୁଣ । ବର୍ଷାଦିନେ ଚାରିଆଡ଼ୁ ମଇଳା ପାଣି ଆସି ନଈରେ ପଡ଼େ । ମଳ

ଜୀବଜନ୍ତୁ ବ ନଈ ପାଣିରେ ପଡ଼ି ପାଣିକୁ ଦୂଷିତ କରନ୍ତି । ପୋଖରୀ ପାଣିରେ ଧୋବା ଲୁଗା କାଚେ । ଗାଈ ଗୋରୁ ଗାଧୁଅନ୍ତି । ନଳିତା, ବାଉଁଶ, କଡା ପ୍ରଭୃତି ଜାଗ କରିବା- ଦ୍ଵାରା ଗାଡ଼ିଆ ପାଣି ଦୂଷିତ ହୁଏ ?

ମୀର—କୂଅ ପାଣିରେ ତ ଏ ସବୁ କିଛି ହୁଏ ନାହିଁ । ତେବେ କପରି ଦୂଷିତ ହୁଏ ?

ବାପା—କୂଅ ମୂଳରେ ଗାଧୋଇଲେ, ବାସନ ମାଜିଲେ, ଉପରର ମଇଳା ପାଣି ମାଟିରେ ଭେଦି କୂଅ ପାଣିରେ ମିଶେ । କୂଅ ପାଖରେ ଗଛ ଥିଲେ ତାର ପତ୍ର ପାଣିରେ ପଡ଼ି ପାଣିକୁ ଦୂଷିତ କରେ । ସମୟ ସମୟରେ କୂଅରେ ଭୂଷା ପଡ଼ି ବାହାରର ମଇଳା ପାଣି କୂଅରେ ପଶି ଦୂଷିତ କରେ ।

ମୀର—ସବୁ ପାଣିତ ଏପରି ହୁଏ, ଆମେ ଭଲ ପିଇବା ପାଣି ପାଇବା କେଉଁଠୁ ?

ବାପା—ନା, ଏଇ ପାଣିକୁ ସଫାକରି ପିଇବାକୁ ହେବ । ଗାଡ଼ିଆ ବା ନଈର ପାଣିଠାରୁ କୂଅ ପାଣି ଭଲ । ତେବେ ଯେଉଁ ପାଣିକୁ ପିଇବା ପାଇଁ ଆଣିବ ପ୍ରଥମେ ତାକୁ ନିଆଁରେ ଫୁଟାଇ ଦେବ । ଥଣ୍ଡା ହୋଇଗଲା ପରେ ଖଣ୍ଡେ ସଫା କନାକୁ ୪।୫ ପୁଟ କରି,ପାଣିଟିକୁ ଛାଣି ଗୋଟିଏ ମାଠିଆରେ ରଖି ଦେବ । ଏପରି କରିବାଦ୍ଵାରା ରୋଗ ଜୀବାଣୁତକ ନିଆଁ ତାତିରେ ମରିଯାନ୍ତି । କନାରେ ଛାଣି ଦେଲେ ଯାହା ମଇଳା ଥାଏ ତାହା ଛାଣି ହୋଇ ରହିଯାଏ ।

ଏହାଛଡ଼ା ପାଣିକୁ ସଫା କରିବା ପାଇଁ ଆଉ ଅନେକ ଉପାୟ ଅଛି । ବଡ଼ ବଡ଼ ସହରମାନଙ୍କରେ ପାଣିକୁ କଳରେ

ପରିଷ୍କାର କରି ଯୋଗାଇ ଦିଆ ହେଉଛି । ତେବେ ଅନ୍ୟ-ସବୁ ଉପାୟରେ ପଇସା ଖର୍ଚ୍ଚ କରିବାକୁ ହୁଏ । ମୁଁ ଯେଉଁ କଥା କହିଲି ସେ ବିନା ଖର୍ଚ୍ଚରେ ପାଣି ସଫା କରିବାର ଖୁବ୍ ସହଜ ବାଟ, ବୁଝିଲ ?

ହର—ହଁ ବୁଝିଲି, ଏଥର ପାଣି ଫୁଟାଇ ପିଇବ ।

## ପ୍ରଶ୍ନ

୧ । ପାଣିକୁ କାହିଁକି ଜୀବନ କହନ୍ତି ?

୨ । କୂଅ ପାଣି କପରି ଦୂଷିତ ହୁଏ ?

୩ । (କ) ଧାଡ଼ିରେ ଥିବା ଶବ୍ଦ ଗୁଡ଼ିକର ଅର୍ଥ (ଖ) ଧାଡ଼ିରେ ଅଛି । କେଉଁଟି କାହାର ଅର୍ଥ କହ ।

(କ) ଦୂଷିତ, ଜୀବନ, କୂପ, ପରିଷ୍କାର ।

(ଖ) ଜଳ, କୂପ ସଫା, ଖରାପ ।

---

# ବିଦେଶୀ ବନ୍ଧୁ

ରମାକାନ୍ତବାବୁଙ୍କ ଘର ମଫସଲର ଗୋଟିଏ ଛୋଟଗ୍ରାମରେ । ତାଙ୍କ ପିତା ଜଣେ କୃଷକ । ସେ ସଂସାର ଚଳାଇବା ପାଇଁ ନାନା ଅଭାବ ଅସୁବିଧା ଭୋଗ କରନ୍ତି । ଯେତେ କଷ୍ଟ ହେଲେ କାହାକୁ ପାଟି ଫିଟାଇ ମାଗନ୍ତି ନାହିଁ । ସେ କହନ୍ତି ନିଜର ବାହୁରେ ବଳ ଥାଉଁ ଥାଉଁ ପର ଆଗରେ ହାତ ପତାଇ ମାଗିବି ନାହିଁ ।

ରମାକାନ୍ତ ପିତାଙ୍କ ପରି ପରିଶ୍ରମୀ । ସେ କାହାରିକୁ କାଟୁ କଥା କହେ ନାହିଁ । ପରପିଲାକୁ ଆପଣାର ଭାଇ ଭଉଣୀ ପରି ଦେଖେ । ସେ ନିଜ ଘରର ବ୍ୟବସାୟ ଶିଖିବାକୁ ପିଲାଦିନୁ ଭାରି

ଇଚ୍ଛା କରୁଥାଏ । ତା ସଙ୍ଗେ ସଙ୍ଗେ ନିଜ ଗ୍ରାମ ସ୍କୁଲରେ ଯାଇ ପାଠ ପଢୁଥାଏ ।

ସ୍କୁଲରେ ରମାକାନ୍ତ ଶିକ୍ଷକ ଓ ଛାତ୍ରଛାତ୍ରୀମାନଙ୍କର ଅତ୍ୟନ୍ତ ପ୍ରିୟ ହୋଇଥାଏ । ସେ ଶେଷ ଶ୍ରେଣୀରେ ବୃତ୍ତି ପାଇ ମାଇନର ସ୍କୁଲରେ ପଢ଼ିଲା ।

ସେ ସ୍କୁଲ ଛାଡ଼ଦେବାପରେ ମଧ୍ୟ ଶିକ୍ଷକ ଛାତ୍ରମାନଙ୍କୁ ରମାକାନ୍ତର କଥା କହି ଉପଦେଶ ଦିଅନ୍ତି । ରମାକାନ୍ତ ଏହି ସ୍କୁଲରେ ଚାରି ବର୍ଷ ପଢ଼ିଲା । ଏଥି ମଧ୍ୟରେ ସେ ଦିନେ ସୁଦ୍ଧା ସ୍କୁଲକୁ ବିଳମ୍ବ କରି ଆସି ନ ଥିଲା । ସ୍କୁଲଗୃହ ପରିଷ୍କାର ରଖିବାଠାରୁ ଆରମ୍ଭ କରି ସ୍କୁଲର ଉଦ୍ୟାନ କାର୍ଯ୍ୟ, ସ୍କୁଲର ପାଠପଢ଼ା ଇତ୍ୟାଦି ସବୁ କାର୍ଯ୍ୟରେ ସେ ମନ ଦେଉଥିଲା । ସେ ସବୁକାର୍ଯ୍ୟକୁ ନିଜର ବୋଲି ମନେ କରେ । ଫଳରେ ସେ ଗୋଟିଏ କ୍ଲାସରେ ପ୍ରଥମ ସ୍ଥାନ ଅଧିକାର କରି ବୃତ୍ତି ପାଇଲା ।

ରମାକାନ୍ତ ମାଟ୍ରିକୁ୍ୟଲେସନ ପରୀକ୍ଷାରେ ଟ ୨୦୲;ଆଇ ଏସ୍‌ ସି ପରୀକ୍ଷାରେ ଟ ୩୦୲ ବୃତ୍ତି ପାଇଲା । ସେ ବରାବର ପରିଶ୍ରମ କରି ପଢୁଥାଏ; ପଢ଼ା ସଙ୍ଗେ ସଙ୍ଗେ ଦେଶକଥା ଭାବୁଥାଏ । ତା'ର ଇଚ୍ଛା ଥାଏ ଆମ ଦେଶରେ ନୂତନ ନୂତନ ଶିଳ୍ପର କାରଖାନା ସ୍ଥାପିତ କରିବ । ଆମ ଦେଶର ଲୋକେ ଅଧିକାଂଶ ଗରିବ ; ପେଟ ପୂରାଇ ମୁଠାଏ ଭାତ ଖାଇବାକୁ ପାଆନ୍ତି ନାହିଁ । ସେ ଭାବୁଥିଲା ଯେ ଆମ ଦେଶରେ କଳ କାରଖାନା ଖୋଲିଲେ ଲୋକଙ୍କର ଅଭାବ ରହିବ ନାହିଁ । ସମସ୍ତେ ସୁଖରେ ଚଳିବେ ।

ସେହିବର୍ଷ ଆମ ଦେଶ ସ୍ୱାଧୀନ ହୋଇଥାଏ । ଭଲ ପିଲାଙ୍କୁ ସରକାର ବୃତ୍ତି ଦେଇ ନ୍ୟୁୟର୍କ ସହରକୁ ପଠାଇବା ପାଇଁ

ସ୍ଥିର କରିଥାନ୍ତି । ଏଥିପାଇଁ ପରୀକ୍ଷା କରାଗଲା । ରମାକାନ୍ତ ସବୁ ପିଲାଙ୍କ ମଧ୍ୟରେ ପ୍ରଥମ ସ୍ଥାନ ଅଧିକାର କଲା । ସେ ସରକାରୀ ବୃତ୍ତିରେ ନ୍ୟୁୟର୍କ ଆଡ଼କୁ ଉଡ଼ାଜାହାଜରେ ଯାଇଥାଇଲା ।



ସେ ନ୍ୟୁୟର୍କ ସହରର ୮୫ ମହଲା କୋଠା ଦେଖି ବଡ଼ ଆଶ୍ଚର୍ଯ୍ୟ ହୋଇଗଲା । ଏହିପରି ଗୋଟିଏ ଗୋଟିଏ କୋଠାରେ ପଚାଶ, ଷାଠିଏ ହଜାର ପର୍ଯ୍ୟନ୍ତ ଲୋକ ରହି ପାରନ୍ତି । ଗୋଟିଏ ମହଲାରୁ ଅନ୍ୟ ମହଲାକୁ ଯିବା ଆସିବା ପାଇଁ ବିଜୁଳି ଶକ୍ତିଦ୍ୱାରା ଚଳୁଥିବା ଲିଫ୍‌ଟର ବ୍ୟବସ୍ଥା ଅଛି । ସହରରେ ରାସ୍ତା ଗୁଡ଼ିକ ଖୁବ୍ ଚଉଡ଼ା ଓ ସିଧା । ଟ୍ରାମ, ମୋଟର ପିମ୍ପୁଡ଼ି ଧାଡ଼ିପରି ଲାଗି ରହିଛି, ମାତ୍ର ରାସ୍ତାରେ ଦୁର୍ଘଟଣା ଖୁବ୍ କମ୍ ହୋଉଅଛି ।

ସେ ସହରଟି ପୃଥିବୀର ବ୍ୟବସାୟ ବାଣିଜ୍ୟରେ ପ୍ରଥମସ୍ଥାନ ଅଧିକାର କରିଅଛି । ରମାକାନ୍ତ ବାବୁ ଇଞ୍ଜିନିୟରିଙ୍ଗ୍ ପଢ଼ିବା ସମୟରେ ଯେତେବେଳେ ଟିକିଏ ସମୟ ପାଉଥାନ୍ତି, ସେ ବିଭିନ୍ନ ବ୍ୟବସାୟୀଙ୍କ ସଙ୍ଗରେ ବ୍ୟବସାୟ ସମ୍ପର୍କରେ କଥାବାର୍ତ୍ତା କରୁଥାଅନ୍ତି ।

ଆମେରିକା ଦେଶର ଲୋକେ ଇଚ୍ଛା କରନ୍ତି ଯେ କିପରି ଅନ୍ୟଦେଶମାନେ ମଧ୍ୟ ତାଙ୍କ ପରି ଧନୀ ହେବେ ଓ ସୁଖରେ ରହିବେ । ତେଣୁ ସେମାନେ ଅନ୍ୟ ଦେଶର ଲୋକଙ୍କୁ ଶିଳ୍ପବାଣିଜ୍ୟ ବିଷୟରେ ଉପଦେଶ ଦିଅନ୍ତି; ଧନ ଅର୍ଜିବାର ଉପାୟ ବତାଇ ଦିଅନ୍ତି । ରମାକାନ୍ତବାବୁ ସେ ଦେଶର ବଡ଼ ବଡ଼ ବ୍ୟବସାୟୀ ଓ କୃଷକମାନଙ୍କ ସଙ୍ଗେ ନାନା ପ୍ରକାର ଆଲୋଚନା କରି ସେମାନଙ୍କ ସଙ୍ଗେ ବନ୍ଧୁତା ବାନ୍ଧିଲେ । ସେମାନେ ମଧ୍ୟ ଆଶା ଦେଲେ ଯେ ରମାକାନ୍ତ ବାବୁ କୌଣସି ବ୍ୟବସାୟ କଲେ ସେମାନେ ତାଙ୍କୁ ଯଥେଷ୍ଟ ସାହାଯ୍ୟ କରିବେ ।

ସେ ଆମେରିକାରୁ ଇଞ୍ଜିନିୟରିଙ୍ଗ୍ ପାଶ କରି ଆମ ଦେଶକୁ ଫେରିଲେ ଓ ସରକାରଙ୍କର ଜଣେ ପ୍ରଧାନ ଇଞ୍ଜିନିୟର ହେଲେ । ଗୃହକଷ୍ଟର ଦୁଇବର୍ଷ ମଧ୍ୟରେ ସେ ଦୁଇ ତିନିଗୋଟି କାରଖାନା ଆମ ଦେଶରେ ବସାଇଲେ ।

ଟଙ୍କା ପଇସା ଓ କାରଖାନାର ସରଞ୍ଜାମର ବିଶେଷ ଅଭାବ ପଡ଼ିଲା । ମାତ୍ର ସେ ଆମେରିକାର ବନ୍ଧୁମାନଙ୍କ ପାଖକୁ ଯେଉଁ ମୁହୂର୍ତ୍ତରେ ତାଙ୍କ କାରଖାନାର ଅଭାବ ଅନଟନ କଥା ଲେଖି ପତ୍ର ପଠାଉଥାନ୍ତି, ସେମାନେ ସଙ୍ଗେ ସଙ୍ଗେ ସବୁ ଅଭାବ ପୂରଣ କରି ଦେଇଥାଅନ୍ତି ।

ସେ ଏହିପରି ବିଦେଶର ଲୋକମାନଙ୍କ ସଙ୍ଗେ ବନ୍ଧୁତା କରି ଆମ ଦେଶରେ ସାତଟି ଲୁଗାକଳ, ଗୋଟିଏ ସାଇକେଲ କାରଖାନା ଓ ଗୋଟିଏ ଲୁଗା କାରଖାନା ବସାଇ ସାରିଛନ୍ତି ।

## ପ୍ରଶ୍ନ

୧ । ପ୍ରାଥମିକ ସ୍କୁଲର ଶିକ୍ଷକ ପିଲାମାନଙ୍କୁ କେଉଁ ବିଷୟରେ ରମାକାନ୍ତର ଉପଦେଶ ଦିଅନ୍ତି ?

୨ । ରମାକାନ୍ତ ଆମେରିକା ଦେଶର ଲୋକଙ୍କ ସଙ୍ଗେ ବନ୍ଧୁତା କରିବାଦ୍ୱାରା ଆମ ଦେଶର କି ଲାଭ ହେଲା ?

୩ । ନିମ୍ନଲିଖିତ ଶବ୍ଦମାନଙ୍କୁ ଲଗାଇ ଗୋଟିଏ ଗୋଟିଏ ବାକ୍ୟ ଗଢ଼—ବୃତ୍ତି, ପ୍ରଥମସ୍ଥାନ, ପରିଶ୍ରମୀ, ଅନଟନ, କାରଖାନା ସମ୍ପର୍କ, ଯଥେଷ୍ଟ, ବନ୍ଧୁତା ।

---

## ଗୃହ କୋଇଲି

କୋଇଲି !
ଉଡ଼ି ଯାଇ ବୁଲ ଘରେ ଘରେ
କୃଷିରେ ଦିଅନ୍ତୁ ମନ ସଭିଏଁ ସତ୍ୱରେ ଲୋ ।

କୋଇଲି !
ଖାଇବାକୁ ଦାନା ନାହିଁ ଦେଶେ
କ୍ଷୁଧା ନ ମେଣ୍ଟଇ ଟଙ୍କା ଗଣିଣି ବିଦେଶେ ଲୋ ।

---

ଲୁଫ୍ଟ—ଯେଉଁ ଯନ୍ତ୍ର ସାହାଯ୍ୟରେ ବେଶୀ ମହଲା ଥିବା କୋଠାର ଗୋଟିଏ ମହଲାରୁ ଅନ୍ୟ ମହଲାକୁ ଯିବା ଆସିବା କରିହୁଏ ।

କୋଇଲି !

ଚାଉଳୀ ମୁହଁରେ ଟଙ୍କା ଗଣି
ଗାରଜ ଭୁଲାଉ ପଗ ଦାନା ଆମେ କିଣି ଲୋ ।

କୋଇଲି !

ଘର ନ ଧରଇ ଆମ ମନ
ଘର ଧନ ନିଏ ପରଦେଶୀ ମହାଜନ ଲୋ ।

କୋଇଲି !

ଗୃହ-ହାନି କଲା ତ ଏଦଶା
ଗୃହୀଭାଇ ହେଲା କଲା ଏ ନିଜ ବେଉସା ଲୋ ।

କୋଇଲି !

ଭୁକ୍ତି ଯାତ୍ରା ଏ ଅଭାବ କଷ୍ଟ
ଛାଡ଼ିଲେ ଅଳସ ଗୃହୀ ନ କରଣ ମଠ ଲୋ ।

କୋଇଲି !

ଜମି ଆମ ରହୁଛି ବହୁତ
ଜାଗର କଲେ କି ତାହା ରହନ୍ତା ପଡ଼ିତ ଲୋ ।

କୋଇଲି !

ଝୁଲି ହୋଇ ପୂର୍ବର ବିଭବ
ଝୁରାଇଲେ ନୟନରୁ ନୀର କେଉଁ ଲାଭ ଲୋ ।

କୋଇଲି !

ଝାଣ କର କାଟିବା ଏ ଘଣ
ଟିକିଏ ପଡ଼ିଆ ଜମି ନ ରଖିବା ଜାଣ ଲୋ ।

କୋଇଲି !

ଠିକଣା ବେଳରେ କାମ କର
ଠିକେ ଘୁଞ୍ଚାଇବା ଦେଶ ଦାରିଦ୍ର୍ୟ ଆମର ଲୋ ।

× × × ×

କୋଇଲି !

ସ୍ୱରାଜ୍ୟ ଲଭିଣ କେଉଁ ଲାଭ
ସ୍ୱଦେଶେ ନୋହିଲେ ଦାନା ଗଣ୍ଡାକ ସୁଲଭ ଲୋ ।

× × × ×

କୋଇଲି !

କ୍ଷଯୁ ହେଉ ଖାଦ୍ୟ ଅନଟନ
କ୍ଷିତିରେ ଓଡ଼ିଆ ଜାତି ଲଭୁ ସନମାନ ଲୋ ।୧୨।

## ପ୍ରଶ୍ନ

୧ । 'କ୍ଷଯୁ ହେଉ ଖାଦ୍ୟ ଅନଟନ
କ୍ଷିତିରେ ଓଡ଼ିଆ ଜାତି ଲଭୁ ସନମାନର ସରଳ ଅର୍ଥ ଲେଖ ।

୨ । (କ) ଧାଡ଼ିରେ ଥିବା ଶବ୍ଦଗୁଡ଼ିକର ଅର୍ଥ (ଖ) ଧାଡ଼ିରେ ଅଛି । କେଉଁଟି କାହାର ଅର୍ଥ କହ—

(କ) କୃଷି, ସଭିଏଁ, ନ ମେଣ୍ଟାଇ, ପତିତ, ସ୍ୱଦେଶ, କ୍ଷିତି ।

(ଖ) ନିଜଦେଶ, ପଡ଼ିଆ, ଅଣ୍ଟୁନାହିଁ, ସମସ୍ତେ, ଚାଷ, ପୃଥିବୀ ।

୩ । ବର୍ତ୍ତମାନ କୃଷିର ଅବସ୍ଥା ବର୍ଣ୍ଣନା କର ।

# ଅସ୍ପୃଶ୍ୟତା ନିବାରଣ

ପ୍ରତାପପୁର ସ୍କୁଲରେ ଗଣେଶପୂଜା ଦିନ ସବୁ ପିଲାଏ ନଡ଼ିଆ ବାଡ଼େଇବାକୁ ଗଲେ । ବଂଶୀ ଭୋଇ ନଡ଼ିଆ ଧରି ପଥର ପାଖରେ ଠିଆ ହେବା ମାତ୍ରେ ମିଶ୍ରେ ଗର୍ଜ୍ଜି ଉଠି କହିଲେ, "ହଇରେ ବଇଁଶିଆ ! ତୁ ପୁଣି ଠାକୁରଙ୍କ ପାଖରେ ନଡ଼ିଆ ବାଡ଼େଇବୁ ? ତୋର ସାହାସ ବଢ଼ି ଯାଉଛି । ଆମ ପୁଅଙ୍କ ସଙ୍ଗେ ବସି ପାଠ ପଢ଼ିବୁ ବୋଲି କ'ଣ ଆମ ଠାକୁରଙ୍କୁ ମାରି କରିବୁ ? ଆରେ ଆଉ ହେବ ନାହିଁ । ରଖ ହେ ତୁମ ପୂଜା ।" ଏପରି କହି ମିଶ୍ରେ ଚାଲିଗଲେ ।

ଯାଇଁ ସାଙ୍ଗେ ସେ ଗ୍ରାମର ଅନ୍ୟାନ୍ୟ ବ୍ରାହ୍ମଣମାନଙ୍କୁ ଡାକି ସବୁ କଥା କହିଲେ । ସମସ୍ତେ ଏ କଥା ଶୁଣି କହିଲେ 'ଚାଲ ହେ, ସେ ମାଷ୍ଟରଙ୍କୁ ଆଜି ଏଠୁ ବାହାର କରିଦେବା । ଏଠି ପାଠ ପଢ଼ାଇବେ ବୋଲି କ'ଣ ଜାତି ଧର୍ମ ବୁଡ଼ାଇବେ !"

ସମସ୍ତେ ଆସି ସ୍କୁଲ ଘରେ ପହଞ୍ଚି ଦେଖିଲେ, ଶିକ୍ଷକ ପୂଜାକାମ ସାରି ବସିଛନ୍ତି ।

ଶାମ ଷଡ଼ଙ୍ଗୀ ଶିକ୍ଷକଙ୍କୁ ଦେଖିବାମାତ୍ରେ କହିଲେ,"ହଇହେ, ଏ କି କଥା ? ବାଉରି ଯେତେହେଲେ ଅଛବ, ସ୍କୁଲରେ ପାଠ ପଢ଼ିବେ ବୋଲି କଣ ଆମ ମୁଣ୍ଡ ଉପରେ ବସିବେ ? ଆମ ଦିଅଁଙ୍କୁ ଛୁଇଁବେ ? ଆମର ଏ ପାଠପଢ଼ା ଦରକାର ନାହିଁ । କାଲିଠାରୁ ଆଉ ପିଲାଏ ସ୍କୁଲକୁ ଆସିବେ ନାହିଁ ।"

ଶିକ୍ଷକ—କଥାଟା କ'ଣ କହନ୍ତୁ । ମୁଁ ତ କିଛି ବୁଝି ପାରୁନାହିଁ ।

ଷଡ଼ଙ୍ଗୀ—ଆଉ ବୁଝିବ କ'ଣ ? ସବୁ ତ ତୁମେ କରୁଛ । ଆଉ ପଚାରୁଛ କ'ଣ ? ବଂଶୀ ଭୋଇ ଦିଅଁଙ୍କ ପାଖରେ ନଡ଼ିଆ

ବାଡ଼େଇବ, ଆମ ବାସନ ଛୁଇଁବ । ଏସବୁ ତୁମର ସକାଟେଣ ହୋଇଛୁ ।

ଶିକ୍ଷକ—ଆଜ୍ଞା ! ସେଥିରେ ତ କିଛୁ ଦୋଷ ନାହିଁ । ସେମାନେ ମଧ୍ୟ ମଣିଷ ?

ଡଆଡ଼ୀ—ଅଛୁ କଥା କହୁଛ ? ମଣିଷ ହେଲେ ବ ସାନ ବଡ଼, ଛୁଆଁ ଅଛୁଆଁ ତ ପୁଣି ଅଛୁ ।

ଶିକ୍ଷକ—କଏ ଏସବୁ କରିଛୁ ? ଆପଣମାନେହିଁ କରିଛନ୍ତି ?

ଡଆଡ଼ୀ—ଆମେ କରିନାହୁଁ ହେ ! ଭଗବାନ କରିଛନ୍ତି ।

ଶିକ୍ଷକ—ନାହିଁ ଆଜ୍ଞା ! ଭଗବାନଙ୍କ ମନ ଏତେ ଛୋଟ ନୁହେଁ । ସେ ସମସ୍ତଙ୍କୁ ଜନ୍ମ ଦେଇଛନ୍ତି । ତାଙ୍କ ନିକଟରେ ସମସ୍ତେ ସମାନ ।

ଡଆଡ଼ୀ—ବେଦ, ପୁରାଣ କ'ଣ୍ଟ ମିଛ ?

ଶିକ୍ଷକ—ବେଦ ପୁରାଣରେ ଲେଖା ଅଛି—ଯେ ଖରାପ କାମ କରେ ସେ ଅଛୁଆ । ତାଙ୍କୁ ଛୁଇଁବା ପାପ । ବ୍ରାହ୍ମଣ ହୋଇ ଯଦି ଖରାପ କାମ କରେ, ତେବେ ସେ ଅଛୁଆଁ ।

ଡଆଡ଼ୀ—ବାଉରି, ହାଡ଼ି ଏମାନେ ତ ଖରାପ କାମ କରନ୍ତି ବୋଲି ତାଙ୍କୁ ଛୁଇଁବା ପାପ । ହାଡ଼ି ମଇଳା ସଫା କରେ । ବାଉରି ମଦ, କୁକୁଡ଼ା, ଗେଣ୍ଡା ପ୍ରଭୃତି ଅଖାଦ୍ୟ ଖାଏ । ତେଣୁ ସେମାନେ ଅଛୁଆ ।

ଶିକ୍ଷକ—ଆପଣଙ୍କ ଘରେ ତ ଆପଣଙ୍କ ସ୍ତ୍ରୀ, ପିଲାମାନଙ୍କର ମଇଳା ସଫା କରନ୍ତି । ତାଙ୍କୁ କ'ଣ ଆପଣ ଛୁଅନ୍ତି ନାହିଁ ? ବରଂ ଯେ ଆମର ମଇଳା ସଫା କରିଦିଏ । ଆମେ ତାଙ୍କୁ ଆଦର

କରିବା ଉଚିତ । ହାଡ଼, ବାଉରୀ ଆମଠାରୁ କେଉଁ ଗୁଣରେ ହେଲେ ହୀନ ନୁହନ୍ତି । ଭଗବାନ ଆମକୁ ଯେପରି ହାଡ଼, ମାଂସ ରକ୍ତରେ ଗଢ଼ିଛନ୍ତି, ତାଙ୍କୁ ଠିକ୍ ସେହିପରି ଗଢ଼ିଛନ୍ତି । ଆଲୋକ, ଜଳ, ବାୟୁ ସମସ୍ତଙ୍କୁ ସମାନ ଭାବରେ ମିଳୁଛି । ବାଉରୀ ବୋଲି ତାଙ୍କୁ ଯଦି ସୂର୍ଯ୍ୟ ଆଲୋକ ଦେଉ ନ ଥାନ୍ତେ, ବାଉରୀ ସାହିକୁ ପବନ ଯାଉ ନଥାନ୍ତା, ତାଙ୍କର ରକ୍ତର ବର୍ଣ୍ଣ ଧଳା କି କଳା ହୋଇଥାନ୍ତା ତେବେ ଜଣାପଡ଼ନ୍ତା ଭଗବାନ ସେମାନଙ୍କୁ ଶ୍ରେଷ୍ଠ କରି ଗଢ଼ିଛନ୍ତି । ଆଉ କୁକୁଡ଼ା ଗେଣ୍ଡା ଖାଇବା କଥା କହିଲେ ଯେ, ସେଥିରେ କିଛି ଦୋଷ ନାହିଁ ।

ତିଆଡ଼ୀ—ଦୋଷ ନାହିଁ ?

ଶିକ୍ଷକ—ଶୁଣନ୍ତୁ । ଯେତେବେଳେ ରୋଗ ହୋଇ ଆପଣଙ୍କ ଭିତରୁ କେହି ଦୁର୍ବଳ ହୋଇପଡ଼ନ୍ତି ସେତେବେଳେ ଡାକ୍ତର କ'ଣ ଦେହର ବଳ ହେବା ପାଇଁ କୁକୁଡ଼ା ଡିମ୍ବ ମାଂସ ଝୋଳର ବ୍ୟବସ୍ଥା କରନ୍ତି ନାହିଁ । କୁକୁଡ଼ା ଖାଇବା ପାପ ନୁହେ । ତେଲ ତ ପୁଣି ଆପଣ ଖାଉଛନ୍ତି । ଆପଣମାନେ ଯେଉଁ ଡାକ୍ତର ଔଷଧ ଖାଆନ୍ତି, ସେଥି ମଧ୍ୟରେ କେତେକରେ ମଦ ପ୍ରଭୃତି ଥାଏ ।

ତିଆଡ଼ୀ—ହଇହେ ପଣ୍ଡିତେ ! ଏ କଣ ସତ କଥା ? ଔଷଧରେ ପୁଣି ଏମିତି ସବୁ ଦିଆ ହୁଏ ବୋଲି ମୁଁ ଜାଣେ ନାହିଁ ଯାଃ—ସବୁ ଗୋଳମାଳିଆ ହୋଇ ଗଲାଣି ।

ଶିକ୍ଷକ—କିଛି ଗୋଳମାଳ ହୋଇନାହିଁ । ଆପଣମାନେ ଶ୍ରେଷ୍ଠ ଜାତି ବୋଲି କାହାକୁ ଘୃଣା କରନ୍ତୁ ନାହିଁ; ଦେଖିବେ ସବୁ ଠିକ୍ ହୋଇଯିବ ।

ଛଅଡ଼ୀ—ଆହେ ! ସେମାନେ ବଡ଼ ଅପରିଷ୍କାର ତାଙ୍କୁ ଘୃଣା ନ କରିବାକୁ କିମିତ କହୁଛ ହେ ?

ଶିକ୍ଷକ—ଆପଣମାନଙ୍କ ଯୋଗୁଁ ସେମାନେ ଅପରିଷ୍କାର । ଆପଣ ଘୃଣା ନ କରି ତାଙ୍କୁ ପାଖରେ ବସାନ୍ତୁ ଦେଖିବେ, ସେମାନେ ଅପରିଷ୍କାର ହୋଇ ପାଖରେ ବସିବାକୁ ସାହାସ କରିବେ ନାହିଁ । ଆପେ ଆପେ ସଫା ହୋଇଯିବେ ।

ହରିମିଶ୍ରେ—ଏ କଥା ସତ, ଦେଖୁନ ସନ୍ତଆ ସେଠିକୁ । ପାଠଶାଠ ପଢି ଏବେ କଟକ ଲାଟ ସଭାକୁ ଯାଇ ସମସ୍ତଙ୍କ ସାଙ୍ଗରେ ଚଉକିରେ ବସୁଛି । ସେ କେଡ଼େ ସଫା ସୁତୁରି । କିଏ ତାକୁ ଧୋବା ବୋଲି ଚିହ୍ନିବ ?

ଶିକ୍ଷକ—ଏତେ ଦୂରକୁ କାହିଁକି ଯାଉଛନ୍ତି ? ଆମ ସ୍କୁଲରେ ଯେଉଁ ଆଠ ଦଶ ଜଣ ହାଡ଼ି, ବାଉରି ପିଲା ପଢ଼ନ୍ତି, ସେମାନେ ତ ବେଶ୍ ସଫା ସୁତୁରି ହୋଇ ଆସୁଛନ୍ତି । ସେମାନେ ଯେବେ ମଇଳା ହେଲେ ଅନ୍ୟ ପିଲା ତାଙ୍କୁ ଘୃଣା କରିବେ ।

ଛଅଡ଼ୀ—ହଁ, ତା ସତ । ତେବେ ଦାଆଁ ଦେଉଳକୁ ତାଙ୍କୁ ଛାଡ଼ିବା ଭଲ ନୁହେଁ ।

ଶିକ୍ଷକ—ଆପଣ ତ ସେହି ପୁରୁଣା କଥା ପୁଣି ଧରି ବସୁଛନ୍ତି । ସେମାନେ ଆମଠାରୁ ଷ୍ଟୋଟ ନୁହନ୍ତି । ଦେଉଳକୁ ନ ଯିବେ କାହିଁକି ? ପାଲ୍ଲୀ, କଲିକତା ଆଡ଼େ ହାଡ଼ି ବାଉରି ସବୁ ଗଲେଣି । ତେଣୁ ଆମଆଡ଼େ ସେପରି ହେବା ଉଚିତ । ଦାସିଆ ବାଉରି ହାତରୁ ନିଜେ ଜଗନ୍ନାଥ ନଡ଼ିଆ ଛଡ଼ାଇ ନେଇଥିଲେ ?

ଡାଆଡ଼ୀ—ହଁ, ତା ହୋଇଥିଲା । ତେବେ ତୁମେ କଣ କହୁଛ, କେହି କାହାକୁ ଛୁଇଁଲେ ଛୁଆଁ ହେବ ନାହିଁ ?

ଶିକ୍ଷକ—ଛୁଆଁ ଗୋଟିଏ କ'ଣ ? ଆମେ ସମସ୍ତେ ସବୁ ଏକ ଈଶ୍ବରଙ୍କ ସନ୍ତାନ । କାମ ସିନା ପୃଥକ୍ । ଶୁଣନ୍ତୁ ଗୋଟିଏ ବାପର ତିନୋଟି ପୁଅ । ବଡ଼ ପୁଅଟି ଓକିଲ, ମଝିଆଁଟି ଦୋକାନୀ, ସାନଟି ହଳ କାମ କରେ । ସେମାନେ କ'ଣ ଭାଇ ନୁହନ୍ତି ? ଓକିଲ ଭାଇଟି କୃଷୀ ଭାଇକୁ ଛୁଇଁଲେ କ'ଣ ଛୁଆଁ ହେବ ?

ମିଶ୍ରେ—ଏ କିପରି କଥା ? ଏକା ଭାଇ ତ, କାମ ସିନା ଅଲଗା ।

ଶିକ୍ଷକ—ଠିକ୍ ସେହିପରି ଦେଖନ୍ତୁ । ଆମେ ସମସ୍ତେ ଭଗବାନଙ୍କର ସନ୍ତାନ ସନ୍ତତି । କିନ୍ତୁ କାମ ଅଲଗା ଅଲଗା । ତେଣୁ ଆମ ଭିତରେ କେହି କାହାକୁ ଘୃଣା କରିବା ନାହିଁ କି ଛୁଇଁଲେ ଛୁଆଁ ହେବା ନାହିଁ ।

ଗ୍ରାମବାଲା—ଠିକ୍ କଥା, ଆମେ ନ ବୁଝି ଏପରି ହେଉଥାଉଁ ।

ମିଶ୍ରେ—ପଣ୍ଡିତଙ୍କ କଥା ସମସ୍ତଙ୍କ ମନକୁ ପାଇଲା ତ ? ଚାଲ, ଏଥର ତାଙ୍କର କଥା ଅନୁସାରେ କାମ କରିବା । ସେ ହେଲେ ଅଜିଠୁଁ ଆମ ଗ୍ରାମର ମୁରବୀ ।

ସେହିଦିନଠାରୁ ପ୍ରତାପପୁର ଗାଁରୁ ଛୁଆଁ ଅଛୁଆଁ କଥା ଉଠିଗଲା । ବ୍ରାହ୍ମଣମାନେ ଯାଇ ବାଉରିସାହି ସଫା କରିବା ପାଇଁ ଉଦ୍‌ଯୋଗ କଲେ । ପିଇବା ପାଣି ପାଇଁ ଚାନ୍ଦା ଆଦାୟ କରି ଗୋଟିଏ କୂଅ ଖୋଳାଇ ଦେଲେ । ଅଛୁଆମାନଙ୍କୁ ଦେଉଳକୁ ଛାଡ଼ିଦେଲେ । ପ୍ରତାପପୁରକୁ ଦେଖି ଅନ୍ୟ ଗ୍ରାମର ଲୋକମାନେ ମଧ୍ୟ ସେହିପରି କରିବାକୁ ଆରମ୍ଭ କଲେ ।

## ପ୍ରଶ୍ନ

୧ । ଅସ୍ପୃଶ୍ୟତା ନିବାରଣ ହେବା କାହିଁକି ଉଚିତ ? ଏହା ସରଳ ଭାଷାରେ ଲେଖ ।

୨ । ଉଦ୍‌ଯୋଗ, ଅଛିବ, ପାଇଁ, ପୃଥକ, ସନ୍ତାନସନ୍ତତି, ବାୟୁ, ଏ ଗୁଡ଼ିକର ଅର୍ଥ ଲେଖ ।

୩ । ଢେଲା, ପବନ, ରକ୍ତ, ଆଲୋକ—ଏମାନଙ୍କୁ ବ୍ୟବହାର କରି ଶୂନ୍ୟସ୍ଥାନ ପୂରଣ କର ।

ବାଉରି ବୋଲି ଯଦି ସୂର୍ଯ୍ୟ—ଦେଇ ନ ଥାନ୍ତେ, ବାଉରି ସାହିକୁ—ଯାଉ ନ ଥାନ୍ତା, ତାଙ୍କର—ବର୍ଣ୍ଣ — ହୋଇଥାନ୍ତା, ତେବେ ଜଣା ପଡ଼ନ୍ତା, ଭଗବାନ ସେମାନଙ୍କୁ ଶ୍ରେଷ୍ଠ କରି ଗଢ଼ିଛନ୍ତି ।

---

## ଜାହାଜ

ଆଗେ ସମୁଦ୍ର ପାରି ହୋଇ ଅନ୍ୟ ଦେଶକୁ ସହଜରେ ଯାଇ ହେଉ ନ ଥିଲା । ଲୋକେ ହାଲୁକା କାଠର ବଡ଼ ବଡ଼ ଡଙ୍ଗା କରି ତା ଦେହରେ ମୋଟା କନାର ପାଲ ବାନ୍ଧି ସମୁଦ୍ରରେ ଛାଡ଼ୁଥିଲେ । ସେହି ପାଲ ଦେହରେ ପବନ ଅଟକି ଡଙ୍ଗାକୁ ଠେଲି ନେଇ ଯାଉଥିଲା । ତା'ରି ସାହାଯ୍ୟରେ ଲୋକେ ଦରିଆ ପାରି ହୋଇ ଅନ୍ୟ ଦେଶମାନଙ୍କୁ ଯାଇ ବେପାର ବାଣିଜ୍ୟ କରୁଥିଲେ । ଏହି ଡଙ୍ଗାକୁ ବୋଇତ କହନ୍ତି ।

ଆଜିକାଲି ସମୁଦ୍ରରେ ଯିବା ଆସିବା କରିବା ପାଇଁ ଜାହାଜ ତିଆରି ହେଲଣି । ଏହା ବୋଇତଠାରୁ ବହୁ ଗୁଣରେ ବଡ଼ ଓ ପାଣି ଉପରେ ଖୁବ୍ ଶୀଘ୍ର ଗୁଡ଼ଲେ । ରେଲଗାଡ଼ିର ଇଞ୍ଜିନ୍ ପରି ଏହାର

ଗୋଟିଏ ଇଞ୍ଜିନ୍ ଅଛି । ଏହି ଇଞ୍ଜିନ୍‌ଟି କୋଇଲା ସାହାଯ୍ୟରେ ଚାଲେ ।



ଜାହାଜ ତିଆରି ହେବା ଦିନୁ ସମୁଦ୍ରରେ ଯିବା ଆସିବା ଯେପରି ସହଜ ହୋଇଯାଇଛି, ଗୋଟିଏ ଦେଶ ସହିତ ଅନ୍ୟ ଦେଶର ସମ୍ପର୍କ ରଖିବା ମଧ୍ୟ ସେହିପରି ସହଜ ହୋଇଛି ।

ଜାହାଜଗୁଡ଼ିକ ଦେଖିବାକୁ ଖୁବ୍ ବଡ଼ ଓ ମଜବୁତ । ଏଥିରେ ବସି ହଜାର ହଜାର ମାଇଲ ଯିବାକୁ ପଡ଼ିଲେ ମଧ୍ୟ ଯତ୍ରୀମାନଙ୍କର କୌଣସି ଅସୁବିଧା ହୁଏ ନାହିଁ । ପକ୍କା ଘରେ ଯେପରି ତଳ ମହଲା, ଉପର ମହଲା ଥାଏ, ଜାହାଜରେ ସେପରି ତଳ ମହଲା ଓ ଉପର ମହଲା ଅଛି । ତଳ ମହଲାରେ ଜିନିଷପତ୍ର ବୋଝାଇ ହୋଇଥାଏ । ଉପର ମହଲାରେ କେବଳ ଯାତ୍ରୀମାନେ ଯାଆନ୍ତି । ଜାହାଜ ଭିତରେ ହୋଟେଲ୍, ଖେଳପଡ଼ିଆ, ପୁସ୍ତକାଳୟ, ଡାକ୍ତରଖାନା ସବୁ ଅଛି । ତେଣୁ ଜାହାଜରେ ଗଲେ ଲୋକର୍

କୌଣସି ଅସୁବିଧା ହୁଏ ନାହିଁ । ସମୁଦ୍ରର ଲୁଣିପାଣି ପିଇ ହୁଏ ନାହିଁ ବୋଲି ଜାହାଜରେ ମଧୁର ପାଣି ରଖା ଯାଇଥାଏ ।

ସମୁଦ୍ର କୂଳରେ ଗୋଟିଏ ଗୋଟିଏ ସ୍ଥାନ ଅଛି । ସେଠାରେ ଜାହାଜ କିଛି ସମୟ ରହେ । ଏହି ସ୍ଥାନମାନଙ୍କୁ ବନ୍ଦର କହନ୍ତି । ବନ୍ଦରରୁ ଜାହାଜ ଖାଦ୍ୟ, ପାଣି ଓ କୋଇଲା ନିଏ । ଲୋକମାନେ ବନ୍ଦରରୁ ଟିକେଟ କିଣି ଜାହାଜରେ ଚଢ଼ନ୍ତି ଓ ଅନେକ ଲୋକ ଓହ୍ଲାନ୍ତି । ଅନ୍ୟସ୍ଥାନକୁ ଯିବାପାଇଁ ଜିନିଷମାନ ଜାହାଜରେ ଲଦା ହୁଏ । କେତେକ ଜିନିଷ ମଧ୍ୟ ସେଠାରେ ଓହ୍ଲାଯାଏ ।

ଆଗେ ଜାହାଜରେ ଯାତ୍ରୀ ଓ ଜିନିଷପତ୍ର ଯିବା ଆସିବା କରୁଥିଲା । ଏବେ ଜାହାଜରେ ଚଢ଼ି ଯୁଦ୍ଧ ମଧ୍ୟ କରାଯାଉଛି । ଯେଉଁ ରାଜ୍ୟର ଯେତେ ବେଶି ଯୁଦ୍ଧ ଜାହାଜ ଅଛି, ସେ ରାଜା ସେତେ ବଳୁଆ ବୋଲି ଜଣା ଯାଉଛି ।

ଏବେ ପାଣି ଭିତରେ ବୁଡ଼ିକରି ଯିବାପାଇଁ ଜାହାଜ ତିଆରି ହେଲାଣି । ଏହା ବୁଡ଼ିକରି ଗଲେ ମଧ୍ୟ ପାଣି ଉପରେ କେଉଁଠି କଣ ଅଛି ସବୁ ଦେଖିପାରେ, ପାଣି ଭିତରେ ଶତ୍ରୁ ପକ୍ଷର ଜାହାଜକୁ ତଳପଟୁ ଫୁଟାଇ ଦିଏ । ଏହାକୁ "ସବ୍-ମେରିନ୍" ବା ବୁଡ଼ା ଜାହାଜ କହନ୍ତି ।

ଜାହାଜ ଚଳାଇବା ବଡ଼ କଷ୍ଟ କଥା । ସମୁଦ୍ର ମଝିରେ ଅନେକ ବିପଦ ପଡ଼େ । ପ୍ରବଳ ଝଡ଼ ତୋଫାନରେ ଜାହାଜ ଓଲଟି ପଡ଼ିପାରେ । ସମୁଦ୍ର ମଝିରେ ବୁଡ଼ି ରହିଥିବା ପାହାଡ଼ ଦେହରେ ବାଡ଼େଇ ହୋଇ ଜାହାଜ ଭାଙ୍ଗିଯାଇପାରେ । ଏପରି ଘଟିଲେ ଶହ ଶହ ଲୋକ ବୁଡ଼ି ମରନ୍ତି ଓ ଲକ୍ଷ ଲକ୍ଷ ଟଙ୍କାର ଜିନିଷ ନଷ୍ଟ ହୁଏ । ଏ ବିପଦରୁ ରକ୍ଷା ପାଇବା ପାଇଁ ଆଜିକାଲି ପ୍ରତ୍ୟେକ

ଜାହାଜରେ ବେତାର ଯନ୍ତ୍ର ରଖା ଯାଇଛି । ବିପଦ ପଡ଼ିଲେ ଏହି ବେତାର ଯନ୍ତ୍ରରେ ଖବର ପଠାଇଦେଲେ ଅନ୍ୟ ଜାହାଜମାନେ ତାହା ଶୁଣିପାରି ଶୀଘ୍ର ଘଟଣାସ୍ଥଳକୁ ଆସି ଲୋକମାନଙ୍କୁ ଉଦ୍ଧାର କରନ୍ତି ।

## ପ୍ରଶ୍ନ

୧ । ଜାହାଜର ସମସ୍ତ ସୁବିଧା ଓ ଅସୁବିଧା ବର୍ଣ୍ଣନା କର ।

୨ । ଶୂନ୍ୟସ୍ଥାନ ପୂରଣ କର—

(କ) ଜାହାଜ ରହିବା ସ୍ଥାନକୁ—କହନ୍ତି ।

(ଖ) ରେଲଗାଡ଼ି ରହିବା ସ୍ଥାନକୁ—କହନ୍ତି ।

(ଗ) ଏହି—ରକ୍ଷା ପାଇବା ପାଇଁ ଆଜିକାଲି ପ୍ରତ୍ୟେକ ଜାହାଜରେ—ରଖାଯାଇଛି ।

୩ । ହୋଟେଲ, ଖେଳପଡ଼ିଆ, ଘଟଣା, ବେତାରଯନ୍ତ୍ର, ଇଞ୍ଜିନ୍ ପ୍ରଭୃତି ଶବ୍ଦ ଲଗାଇ ଗୋଟିଏ ଗୋଟିଏ ବାକ୍ୟ କର ।

---

# ଉତ୍କଳମଣି ଗୋପବନ୍ଧୁ

ଥରେ ପୁରୀ ଜିଲ୍ଲାରେ ବଢ଼ି ହୋଇ ବହୁତ ଘରଦ୍ୱାର ଭାଙ୍ଗି ନଷ୍ଟ କରିଦେଲା । କିଆରିରୁ ଧାନସବୁ ଧୋଇଗଲା । ଗୁହାଳ ଆଉ ଖାଲ୍ ପାଣିରେ ପୂର୍ଣ୍ଣ ହୋଇ ଗାଡ଼ିଆ ପରି ଦିଶିଲା । ବର୍ଷା ମଧ୍ୟ ଖୁବ୍ ହେଉଥାଏ । ଖାଇବାକୁ ନ ପାଇ ଲୋକେ ବଡ଼ କଲବଲ ହେଉଥାନ୍ତି ।

ଏ ଖବର ପାଇ ସହରର କେତେକ ଭଦ୍ରଲୋକ କେତୋଟି କଲେଜ ପିଲାଙ୍କୁ ସଙ୍ଗରେ ନେଇ ସେହି ବନ୍ୟାଗ୍ରସ୍ତ ଲୋକଙ୍କ ପାଇଁ ସାହାଯ୍ୟ ମାଗିଲେ । ଟଙ୍କା ପଇସା, ଚୁଡ଼ା ଗୁଡ଼ ବହୁତ ଆଦାୟ

ହେଲା । ଯେଉଁ ଅଞ୍ଚଳରେ ବଢ଼ି ହୋଇ ଘର ନଷ୍ଟ ହୋଇ ଥାଏ, ସେଠାକୁ ଯିବାକୁ ରାସ୍ତାର ସୁବିଧା ନ ଥାଏ । ତା ପରେ ପୁଣି ହଇଜା ହୋଇ ବହୁ ଲୋକ ମରୁଥାନ୍ତି । ସହରରେ ବୁଲି ଲୋକଙ୍କୁ ବୁଝାଇବାରୁ ଲୋକେ ସିନା ଚାନ୍ଦା ଦେଲେ, ମାତ୍ର ସେ ଅଞ୍ଚଳକୁ କେହି ବାହାରିଲେ ନାହିଁ ।

ଶେଷରେ କେବଳ ଜଣେ ଭଦ୍ରଲୋକ ହଇଜାକୁ ନ ଡରି ଯିବାକୁ ଆଗଭର ହେବାରୁ କେତେକ କଲେଜ ପିଲା ତାଙ୍କ ସଙ୍ଗରେ ଗଲେ । ସେହି ଭଦ୍ରଲୋକ ହେଲେ ସେମାନଙ୍କର ନେତା ।

ସମସ୍ତେ ଚୂଡ଼ା ଗୁଡ଼ଲ, ଔଷଧ ଇତ୍ୟାଦି ବାଣ୍ଟିବା ପାଇଁ ପିଠିରେ ବୋଝଟିମାନ ଧରିଥାନ୍ତି ଓ ନିଜ ନିଜର ଖାଇବା ପାଇଁ ଗୁଡ଼ଲ ମଧ ବାନ୍ଧିଥାନ୍ତି । ବଡ଼ କଷ୍ଟରେ ଚାଲି ଚାଲି ଯାଇ ସେ ଗାଁଆରେ ପହଞ୍ଚିଲେ । ତାଙ୍କୁ ଦେଖିବା ମାତ୍ରେ ଲୋକମାନେ ତାଙ୍କ ଚାରିପଟେ ଘେରିଗଲେ । ଉପବାସ ରହି ରହି ଲୋକଙ୍କର କଣ୍ଠା ଦୋହଲୁଥାଏ । ସେମାନଙ୍କ ଅବସ୍ଥା ଦେଖି ନେତାଙ୍କ ଆଖିରୁ ଝର ଝର ଲୁହ ବୋହିଗଲା । ସଙ୍ଗେ ସଙ୍ଗେ ଚୂଡ଼ା, ଗୁଡ଼ଲ ଓ ଔଷଧ ଦିଆଗଲା ।

ସେଇ ଗାଆଁ କଥା ବୁଝୁ ବୁଝୁ ଦୁଇ ତିନି ଦିନ ବିତିଗଲା । ସାଙ୍ଗରେ ନିଜର ଖାଇବା ପାଇଁ ଆଣିଥିବା ଗୁଡ଼ଲ ସରିଗଲା । କ'ଣ ଖାଇବେ ବୋଲି ପିଲାମାନଙ୍କର ଭାବନା ପଡ଼ିଲା ।

ଜଣେ ପିଲା କହିଲା, "ଆମ ଗୁଡ଼ଲ ସିନା ସରିଯାଇଛି, ବଣ୍ଟା ହେବା ଗୁଡ଼ଲ ତ ଅଛି । ଚାଲ ସେଥିରୁ କିଛି ରାନ୍ଧି ଖାଇବା ।" ସେଇଆ ହେଲା । ପତ୍ର ପଡ଼ି ଭାତ ବଢ଼ା ହେଲା ।

ନେତା ଆସି ପଙ୍ଗତରେ ଭାତ ଦେଖି ଚମକି ପଡ଼ି କହିଲେ, "ଆମ ପାଇଁ ତ ଚାଉଳ ନ ଥିଲା । ଏ ଚାଉଳ ଆଣିଲ କେଉଁଠୁ ?"

ଜଣେ ଛାତ୍ର ଡରି ଡରି କହିଲା, "ବସ୍ତା ଚାଉଳକୁ କଣ୍ଟ୍ରୋଲ ଗାନ୍ଧିଙ୍କୁ ।"

ନେତାଙ୍କ ତୁଣ୍ଡ ଫିଟିଲା ନାହିଁ । ଆଖିରୁ ଧାର ଧାର ହୋଇ ଲୁହ ବହିଗଲା । ସେ ଆଉ ପଙ୍ଗତରେ ବସିଲେ ନାହିଁ । ଅନ୍ୟମାନେ ମଧ ଉଠି ଚାଲିଗଲେ । ଗାଁରୁ କେତୋଟି ଲୋକଙ୍କୁ ଡାକି ସେଇ ପଙ୍ଗତରେ ବସାଇ ଦେଲେ । ପିଲାମାନେ ନିଜର ଭୁଲ ବୁଝିପାରିଲେ ।



ଗୋପବନ୍ଧୁ

ତା ପରେ ଅନ୍ୟ ଗୋଟିଏ ଗାଁ ଲୋକଙ୍କୁ ସାହାଯ୍ୟ କରିବା ପାଇଁ ବାହାରି ଗଲେ । ସେ ଗାଁରେ ଚୁଡ଼ା, ଚାଉଳ ଓ ଔଷଧ ବସ୍ତା

ଗଲା । କର୍ମୀମାନଙ୍କ ଖାଇବା ପାଇଁ ଗୁଡ଼ଳ ସହରରୁ ଆସି ସେଇ ଗାଁରେ ପହଞ୍ଚିଲା । ପୂର୍ବରୁ ତ ସମସ୍ତେ ଉପବାସରେ ଥିଲେ । ଭାରି ଭୋକ ହେଉଥାଏ । ଗାଁ ଲୋକଙ୍କ କଥା ବୁଝିସାରି ଖୋଷାଇ କଲେ । ସବୁ କାମ ତ ଛୁଣ୍ଡି ଯାଇଥାଏ । ପନ ପଡ଼ ଭାତ ବଢ଼ା ହେଲା । ପିଲାମାନେ ଆଗ ଖାଆନ୍ତୁ ବୋଲି ନେତା କହିଲେ ।

ପିଲାମାନେ ଖାଇ ସାରିବା ପରେ ନେତା ଚଳୁ କରିବାକୁ ହାତରେ ପାଣି ଧରିଛନ୍ତି; ହଠାତ୍ ତାଙ୍କ ଆଗରେ ଗୋଟିଏ କଏ ଛିଡ଼ା ହୋଇଗଲା । ସେହିଁ ଦେଖିଲେ, ଗୋଟିଏ ସ୍ତ୍ରୀ ଲୋକ କାଖରେ ରୋଗୀ ପିଲାଟିଏ ଧରି ଠିଆ ହୋଇ ବଢ଼ା ହୋଇଥିବା ଭାତକୁ ସେହିଁ କହୁଛି, "ବାବୁ, ସୁରୁଦିନ ହେଲା ଭାତ ଦେଖିନାହିଁ, ଆଉ ବଞ୍ଚି ପାରିବ ନାହିଁ ।"

ନେତାଙ୍କ ହାତ ଥରିଲା । ଚଳୁପାଣି ତଳେ ଲଢ଼ିଗଲା । ସେ ପତ୍ରଟି ଉଠାଇ ନେଇ ସ୍ତ୍ରୀ ଲୋକଟି ପାଖରେ ଥୋଇ ଦେଲେ । ସ୍ତ୍ରୀ ଲୋକଟି ଆନନ୍ଦରେ ଖାଇବାକୁ ଲାଗିଲା । ତାହାର ଆନନ୍ଦ ଦେଖି ନେତାଙ୍କ ପେଟ ପୂରି ଉଠିଲା ।

ଏ ମହାପୁରୁଷ କିଏ ଜାଣ ? ଏ ହେଉଛନ୍ତି, ଉତ୍କଳମଣି ଗୋପବନ୍ଧୁ ଦାସ ।

## ପ୍ରଶ୍ନ

୧ । ବଢ଼ି ଦ୍ୱାରା କ କ୍ଷତି ହୁଏ ?

୨ । ତୁମ୍ଭେ ବଢ଼ି ଅଞ୍ଚଳର ଲୋକଙ୍କ ଅବସ୍ଥା ଖବରକାଗଜରୁ ପଢ଼ିଲ, ସେଥିପାଇଁ କ ବ୍ୟବସ୍ଥା କରିବ ?

୩ । ପିଲାମାନେ କପରି ନିଜର ଭୁଲ ବୁଝିପାରିଲେ ?

୪ । ଗୋପବନ୍ଧୁ ଦାସଙ୍କୁ କାହିଁକି ଉତ୍କଳ ମଣି କହନ୍ତି ?

# ଔଷଧ ଉଦ୍ୟାନ

ନାମ—ରାଜୁଭାଇ, ନମସ୍କାର !

ରାଜୁ—କରେ, ତୁ କାହା ସଙ୍ଗେ ଏଠାକୁ ଆସିଲୁ ?

ନାମ—କାହିଁକି, ଏଇ ଆଗ ସାହିରେ ପରା ଆମ ବାପାଙ୍କର ଜଣେ ଚିହ୍ନା ଲୋକଙ୍କ ଘର । ବାପାଙ୍କ ସାଙ୍ଗରେ ତ ଆସିଛି ।

ରାଜୁ—ବାପା କାହାନ୍ତି ?

ନାମ—ସେ ବଧୂ ମଉସାଙ୍କ ଘରେ ଅଛନ୍ତି ।

ରାଜୁ—ତେବେ ତୁ ଏକୁଟିଆ ଆମ ସ୍କୁଲକୁ କପରି ଆସିଲୁ ?

ନାମ—କେତେ ବାଟ ଯେ ? ପଚାରି ଚାଲି ଆସିଲି ।

ରାଜୁ—ହଉ ତେବେ ଆ, ମୋ ସାଙ୍ଗରେ ଆମ ସ୍କୁଲ ବୁଲି ଦେଖିବୁ ।

ନାମ—ହଉ ଚାଲ । ରାଜୁଭାଇ, ତୁମେ ବଡ଼ ଦିନ ଛୁଟିରେ କ'ଣ ଗୋଟାଏ ଔଷଧ ବଗିଚା କଥା ଆମ ଗାଁ ଶିକ୍ଷକଙ୍କୁ କହୁ ନ ଥିଲ ? ସେ କଥା କ'ଣ ମୁଁ ବୁଝିପାରିଲି ନାହିଁ ?

ରାଜୁ—ନ ବୁଝିଲେ ନାହିଁ । ଏବେ ତ ନିଜେ ଆସିଛୁ, ଆସୁନୁ ଆମ ଔଷଧ ବଗିଚା ଦେଖାଇବୁ ।

ନାମ—ତୁମ କଥା ମୋତେ କାହିଁକି ଅପସନ୍ଦ ଲାଗୁଛି । ଔଷଧ ତ ଶିଶିରେ ରହେ । ଆଉ ତୁମ ବଗିଚାରେ କପରି ରହିଲା ?

ରାଜୁ—ନାହିଁରେ ଓଲା ! ଅନେକ ଔଷଧ ବଣ ବଗିଚାରେ ଥାଏ । ତା ପରେ ତାକୁ ନେଇ ଶିଶିରେ ରଖନ୍ତି, ବୁଝିଲୁ ?

ନିମ—ତୁମେ ମୋତେ ଖାଲି ଠକ ଦେଉଛ । ତୁମ କଥା ମୁଁ କିଛି ବୁଝି ପାରୁନି ।

ରଜୁ—ହଉ ହଉ ଆ; ବୁଝାଇ ଦେବି ।

ନିମ—ଚାଲ, କେଉଁଠିକି ଯିବା ?

ରଜୁ—ଆଗ ଦେଖିଲୁ, ଏଗୁଡ଼ିକ ସବୁ କ'ଣ ?

ନିମ—ଏଗୁଡ଼ିକ ସବୁ ଗଛ !

ରଜୁ—ହଁ, ଏହିଗୁଡ଼ିକ ଔଷଧ ଗଛ ! ଏଇ ଔଷଧ ଗଛକୁ ଡାକ୍ତର କବିରାଜମାନେ ନେଇ ଚେଛିତ, ବାଟି, ଚପୁଡ଼ି, ରାନ୍ଧି ଔଷଧ ତିଆରି କରି ଶିଶିରେ ରଖନ୍ତି ।

ନିମ—ତୁମେ ତେବେ ଏଗୁଡ଼ିକ ଏଠାରେ କାହିଁକି ଲଗାଇଛ ?

ରଜୁ—ଆମର ଏଠି ଅନେକ ସମୟରେ ଔଷଧ ଦରକାର ହେଉଛି । ଏତେ ପିଲା, କାହାର ଗୋଡ଼ ହାଣି ହୋଇ ଯାଉଛି, କା ହାତ କଟି ଯାଉଛି, କାହାକୁ ଜର, କାହାର କାଛୁ, କାହାର ବଥ ଇତ୍ୟାଦି ହେଲେ ଆମେ ଏଠୁ ଔଷଧ ନେଇ ଭଲ କରି ଦେଉଛୁ ।

ନିମ—ଏଇ ବଗିଚାରେ ଜର, କାଛୁ, ବଥ, ଝାଡ଼ା, ଅଜୀର୍ଣ୍ଣ ସବୁ ରୋଗର କ'ଣ ଔଷଧ ଅଛି ?

ରଜୁ—ହଁ, ଅନେକ ରୋଗର ଔଷଧ ଏଇ ବଗିଚାରୁ ମିଳିବ । ଆମର ଏଇ ଚେରଟି ମୂଳ ଖୁବ୍ ଭଲ ଔଷଧ । ଆମର ବାଡ଼ ବଗିଚାରେ ଈଶ୍ୱର ଆମ ରୋଗ ପାଇଁ ଔଷଧ ଖଞ୍ଜି ଦେଇଛନ୍ତି । ଆମେ ତାକୁ ଚିହ୍ନି ନ ପାରି ପଇସା ଖର୍ଚ୍ଚ କରି ହଇରାଣ ହେଉଥାଉଁ ।

ନିମ—ଭାଇ ! କେଉଁ ଗଛ କେଉଁ ରୋଗ ଭଲ କରେ ମତେ ଟିକିଏ ଦେଖାଇ ଦେଲେ ଭଲ ହୁଅନ୍ତା ।

ରାଜୁ—ଆଜି ତ ସମୁଦାୟ ଗଛ କଥା କହିଲା ବେଳକୁ ବହୁତ ସମୟ ଲାଗିବ । ତେବେ କେତୋଟି ଔଷଧ ଗଛ କଥା କହୁଛି ଶୁଣ । ଏ ସବୁ ନିଜେ ମନେ ରଖି ପରୀକ୍ଷା କରି ଦେଖିବୁ, ମୋ କଥା ସତ କି ମିଛ ।

ହେଇ ଦେଖ, ଏଇ ଉତ୍ତର ପଟରେ ଅମୃତଭଣ୍ଡା, ଡାଳିମ୍ବ, ଲେମ୍ବୁ, ନିମ୍ବ, ବାଇଗଣ ଓ ଅଁଳା ଗଛ ଅଛି । ଏ ପ୍ରତ୍ୟେକର ବହୁତ ଗୁଣ ଅଛି ।

ଅମୃତଭଣ୍ଡା—ପାଚିଲା ଅମୃତଭଣ୍ଡା ଖାଇଲେ ରକ୍ତ ବଢ଼େ ଓ ଭଲ ଜୀର୍ଣ୍ଣ ହୁଏ । ଛୋଟ ପିଲାମାନେ ଏ ଫଳ ଅଭ୍ୟାସ କରି ଖାଇଲେ ସୁସ୍ଥ ଓ ସବଳ ହୁଅନ୍ତି ।

ନିମ—ଆମ ଘରେ ତ କଞ୍ଚା ଅମୃତଭଣ୍ଡାକୁ ତରକାରୀ କରି ଖାଆନ୍ତି ।

ରାଜୁ—ହଁ, ସେ ମଧ୍ୟ ବେଶ୍ ଉପକାରୀ । ଡାଳିମ୍ବ ଗଛ କଥା ଶୁଣ । ଯେଉଁ ଲୋକଙ୍କର ଦାନ୍ତରୁ ରକ୍ତ ପଡ଼େ, ସେମାନେ ଡାଳିମ୍ବର ଶୁଖିଲା ଫୁଲରେ ଦାନ୍ତ ଘଷିଲେ ବେଶ ଉପକାର ହୁଏ । ରକ୍ତଝାଡ଼ା ହେଉଥିଲେ ଡାଳିମ୍ବର ଛେଲି, ଫୁଲ, କଷିଫଳ ଏକାଠି ବାଟି ଖାଇଲେ ଶୀଘ୍ର ଝାଡ଼ା ବନ୍ଦ ହୁଏ ।

ଆଉ ଲେମ୍ବୁଗଛ କଥା ବା କ'ଣ କହିବ ? ଲେମ୍ବୁରସ ଭାରି ଉପକାରୀ । ଅଭ୍ୟାସ କରି ଖାଇଲେ ଦେହରେ ସହଜରେ ରୋଗ ପଶି ପାରେ ନାହିଁ । ଲୁଣ ଓ ଲେମ୍ବୁ ସରବତ ଅଜୀର୍ଣ୍ଣ ରୋଗ ଭଲ କରେ ।

ନିମ—ନିମ୍ବ ଚେଲିର ସିଝାପାଣି ପିଇଲେ ହଇଜା ଧରେ ନାହିଁ, ନିମ୍ବ ଫୁଲକୁ ବାଟି ମୁଣ୍ଡରେ ଲଗାଇଲେ ଉକୁଣି ମରିଯାନ୍ତି । ଦେହରେ ଘା, କାଛୁ, କୁଣ୍ଡିଆ ହେଲେ ନିମ୍ବ-ପତ୍ର ସିଝା ପାଣିରେ ଧୁଆହୁଏ । କିଛି ଲୁଣ ଓ ହିଙ୍ଗୁ ସହିତ ନିମ୍ବପତ୍ର ବାଟି ଖାଇଲେ କୃମି ମରିଯାନ୍ତି ।

ବାସଙ୍ଗ—ଏହି ଗଛ ପତ୍ରର ରସ ଓ ଅଦାରସ ଏକାଠି ମିଶାଇ ଅଳ୍ପ ପରିମାଣରେ ଖାଇଲେ କାଶ, ସର୍ଦ୍ଦି ଓ କଫ ଭଲ ହୋଇଯାଏ ।

ନିମ—ରଜୁଭାଇ, ଏ ପଟରେ ଯେ ଛୋଟ ଛୋଟ ଗଛ ଅଛି ସେ ସବୁ କ'ଣ ଔଷଧରେ ଲାଗେ ?

ରଜୁ—ହଁ ରେ, ସବୁ ତ ଔଷଧ ।

ନିମ—ବଗିଚାଟାରୁ ଏ ମୁଥା ଦୁବଗୁଡ଼ାକ ବାଛି ଦେଉ ନାହିଁ କାହିଁକି ?

ରଜୁ—ନା ନା, ସେ ମଧ ଔଷଧରେ ଲାଗେ । ତେଣୁ ତାକୁ ଜାଣି ଶୁଣି ରଖାଯାଇଛି ।

ନିମ—ମୁଥା କି ଔଷଧ ହୁଏ ମ ?

ରଜୁ—ଯଦି ବିଛାଟିଏ କାମୁଡ଼ି ଦେବ, ତାହାହେଲେ ଏଇ ମୁଥାକୁ ବାଟି ବୋଳି ଦେଲେ ସାଙ୍ଗେ ସାଙ୍ଗେ ଭଲ ହୋଇଯିବ । ନାକରୁ ରକ୍ତ ପଡ଼ିଲେ ଦୁବ ଛେଚି ତା'ରସକୁ ନାସ ସ୍ୱରୂପ ନେଲେ ରକ୍ତ ପଡ଼ିବା ଭଲ ହୋଇଯିବ ।

ନିମ—ଅଚ୍ଛା, ଅରଖ ଗଛ କ'ଣ ହୁଏ ?

ରଜୁ—ଆରେ କାନଟଣା କମିବ କଷ୍ଟ ଦଏ ଜାଣିଛୁଟି ?

ନମ—ହଁ ହଁ, ଭାଇ କଷ୍ଟ । ଥରେ ମୋର କାନ ଝେଣିକଲା ଯେ ମୁଁ ବଡ଼ ହାଇରାଣ ହୋଇଗଲି ।

ରାଜୁ—-ଏଇ ଅରଖର ପାଚିଲା ପତରେ ଘିଅ ବୋଳି ଉଷୁମ କରି କାନରେ ଚିପୁଡ଼ିଲେ କାନଝେଣା ଭଲ ହୋଇଯାଏ ।

ଅଦା—ଅଦାରସ ଓ ଛେଳିଦୁଧ ଏକାଠି ମିଶାଇ ପିଇଲେ ପ୍ଳୀହା ଭଲ ହୋଇଯାଏ ।

ହଳଦ—-କଞ୍ଚା ହଳଦ, ନିମ୍ବପତ୍ର ବାଟି ଲଗାଇଲେ ଘିମିରି ଭଲହୁଏ । ହଳଦ ଖାଇଲେ ପେଟରୁ କୃମି ମରି-ଯାନ୍ତି । ବଥ ଉପରେ ହଳଦବଟା ଉଷୁମ କରି ଲଦିଲେ ବଥ ଫାଟିଯାଏ ।

ଘିଅକୁଆଁରି—ଛୋଟ ପିଲାଙ୍କର ଝାଡ଼ା ନ ହେଲେ ଏହାର ରସ ଓ ଜଡ଼ାତେଲ ପେଟରେ ମାଲିଶ କଲେ ଝାଡ଼ା ହୋଇ-ଯାଏ । ଅଧିକ ପରିଶ୍ରମ ଯୋଗୁଁ ମୁଣ୍ଡ ବୁଲାଇଲେ ଏହାକୁ ମାଲିଶ କଲେ ମୁଣ୍ଡ ଥଣ୍ଡା ହୁଏ ।

ଆଜି ଏତିକ ହୋଇଥାଉ । ଯାହାସବୁ ଜାଣିଲ ଗୋଟିଏ ଖାତାରେ ଲେଖି ରଖିବୁ । ପରୀକ୍ଷା କରି ଦେଖିବୁ ସତ କି ମିଛ ।

ନମ—ରାଜୁଭାଇ ! ଆମ ଗାଁରେ ଗୋଟିଏ ଔଷଧ ବଗିଚା କଲେ ତ ଭଲ ହୁଅନ୍ତା । ଆମ ଗାଁ ଲୋକେ ସମସ୍ତେ ବିନା ପଇସାରେ ଅନେକ ରୋଗରୁ ରକ୍ଷା ପାଆନ୍ତେ ।

ରାଜୁ—ନିଶ୍ଚୟ, ମୁଁ ପରା ଗୋଟାଏ ବଗିଚା କରାଇବା ପାଇଁ ତୁମ ଗୁରୁଜୀଙ୍କୁ କହୁଥିଲି । ଏଇଥର ଗଲେ ନିଶ୍ଚୟ କରିବା ।

ନାମ—ରାଜୁଭାଇ, ମୁଁ ଯାଉଛି, ବାପାଙ୍କୁ କହି ଆମ ବାଡ଼ି ଅଡ଼େ କେତୋଟା ଗଛ ଆଗ ଲଗାଇବ ।

ରାଜୁ—ହଁ, ଖୁବ୍ ଭଲ ହେବ । ଆଚ୍ଛା ତୁ ଯା—ଏଥର ଗଲେ ତୋତେ ଆଉ କେତୋଟି ଗଛ କ କ ରୋଗରେ ଲାଗେ ବତାଇ ଦେଇ ଆସିବ ।

ନାମ—ହଉ, ନମସ୍କାର ।

## ପ୍ରଶ୍ନ

୧ । କେତୋଟି ଔଷଧ ଗଛର ନାମ କହ । କେଉଁ କେଉଁ ଗଛରେ କ କ ରୋଗ ଭଲ ହୁଏ ?

୨ । ତୁମେ ତୁମର ବାଡ଼ରେ ଗୋଟିଏ ଔଷଧ ଗଛର ବଗିଚା କରି ଔଷଧ ଗଛ ଲଗାଇବା ପାଇଁ ଉପଦେଶ ଦେଇ ତୁମ ସାନଭାଇ ପାଖକୁ ଗୋଟିଏ କ୍ଷୁଦ୍ର ପତ୍ର ଲେଖ ।

୩ । ଭ୍ରମ ସଂଶୋଧନ କର—

(୧) ପାଚିଲା ଅମୃତଭଣ୍ଡା ଖାଇଲେ ଶୀଘ୍ର ଝାଡ଼ା ହୁଏ ।

(୨) ଲୁଣି ଓ ଲେମ୍ବୁ ସରବତ ଖାଇଲେ ଅଜୀର୍ଣ୍ଣ ରୋଗ ଭଲ ହୁଏ ।



# ଆମେ ନୂଆ ଯୁଗର ଛୁଆ

ଆମେ ନୂଆ ଯୁଗର ଛୁଆ,
ନୂଆ କରି ଦେଶ ଗଢ଼ିଦେବୁଁ ଆମେ
ବିଦେଶୀ ହେବେ ଛାନିଆଁ ।
ଜଳରେ ବୋଇତ ଶୂନ୍ୟେ ବ୍ୟୋମଯାନ
ଚାଲିଲେ ଆମରି ଭାଇ,
ପୂର୍ବ ବଂଶଧର ସେ ସବୁ ଆମର
ଆମେ କି ପାରିବା ନାହିଁ ?
ଏହି ଦେଶ ପୁଅ ଭୀଷ୍ମ, ଅରଜୁନ,
ପ୍ରତାପ, ଅନଙ୍ଗଭୀମ
ଏକୁ ଏକ ବଳି ବୁଦ୍ଧିରେ ବଳରେ
ଜିଣିଲେ ରାଜ୍ୟ ଅସୀମ ।
ସେହି ବୁଦ୍ଧି ବଳ ଆମ ଦେହେ ଭରା
ଆମେ କପାଁ ହେବୁ ହୀନ,
ଦୁନିଆ ଆଗରେ ଛାତିକୁ ଫୁଲାଇ
ଚାଲିବୁ ନ ହୋଇ ମ୍ଳାନ ।
ଏ ଦେଶର ଧ୍ରୁବ, ପ୍ରହ୍ଲାଦ ସମ
ଭକ୍ତ ଛନ୍ତି କେତେଜଣ
ସତ ପାଇଁ ରାଜା ହରିଶ୍ଚନ୍ଦ୍ର ପରି
ରାଜ୍ୟ କେ କରିବ ଦାନ ?
ସରୋଜିନୀ ଦେବୀ ଆମ ଦେଶ ଝିଅ
ଅହଲ୍ୟା, କସ୍ତୁରୀ ବାଈ,

ନିଜ ସୁଖ ଶିଘ୍ର ଛାଡ଼ି ଦେଇଛନ୍ତି
ଏ ଦେଶ ଗଢ଼ିବା ପାଇଁ ।
ଏ ଦେଶର ପୁଅ ଗାନ୍ଧି, ଗୋପବନ୍ଧୁ
ଜବାହର, ମଧୁସୂଦନ,



ଦେଶ ଦଶ ପାଇଁ ରକ୍ତ ଢାଳିଛନ୍ତି
ପାସୋରି ପାରେ କି ମନ ?
ତାଙ୍କର ରକତ ଏ ଦେହେ ବହୁଛି
ହୋଇବୁ ତାହାଙ୍କ ପରି,
ଧନ ଧାନ୍ୟେ ଆମ ଦେଶକୁ ଭରିବୁ
ତିରଙ୍ଗା ପତାକା ଧରି ।

## ପ୍ରଶ୍ନ

୧ । ବ୍ୟୋମଯାନ, ଯାନ, ଶିଶୁ, ଅସୀମ, ଭସ୍ମ ପ୍ରଭୃତିର ଅର୍ଥ ଲେଖି ତାକୁ ଗୋଟିଏ ଗୋଟିଏ ବାକ୍ୟରେ ବ୍ୟବହାର କର ।

୨ । ନୂଆଯୁଗର ଛୁଆ ହେଲେ ଆମେ କପରି ଦେଶ ଗଢ଼ିବୁ ?

୩ । ତଳଲିଖିତ ବ୍ୟକ୍ତିମାନେ କିଏ ? ସେମାନଙ୍କ ବିଷୟରେ କଣ ଜାଣ କହ ।

ଭୀଷ୍ମ, ଅର୍ଜୁନ ଅନଙ୍ଗଭୀମ, ପ୍ରହ୍ଲାଦ, ଅହଲ୍ୟା, ସରୋଜିନୀ, ଜହର, ମଧୁସୂଦନ, ଗୋପବନ୍ଧୁ ।

—ସ ମା ପ୍ତ—

---

(୧) ୰ସରୋଜିନୀ ନାଇଡ଼ୁ ଯୁକ୍ତପ୍ରଦେଶର ଲାଟ ଥିଲେ ।

(୨) ରାଣୀ ଅହଲ୍ୟାବାଈଙ୍କ ଶାସନରେ ପ୍ରଜାମାନେ ଆନନ୍ଦରେ ଥିଲେ । ସେ ମାଳବ ପ୍ରଦେଶର କନ୍ୟା

(୩) କସ୍ତୁରୀବାଈ—ମହାତ୍ମାଗାନ୍ଧିଙ୍କ ସହଧର୍ମିଣୀ ।

(୪) ମହାତ୍ମା ମୋହନ ଦାସ କରମଚାନ୍ଦ ଗାନ୍ଧି—ଭାରତର ସ୍ୱାଧୀନତା ଆଣିଥିଲେ ।

(୫) ଉତ୍କଳମଣି ଗୋପବନ୍ଧୁ ଏ ଦେଶର ଗରିବ ବନ୍ଧୁ ।

(୬) ମାନ୍ୟବର ଶ୍ରୀ ଜବାହାରଲାଲନେହ୍‌ରୁ—ବର୍ତ୍ତମାନ ଭାରତର ପ୍ରଧାନମନ୍ତ୍ରୀ ।

(୭) ଉତ୍କଳଗୌରବ ମଧୁସୂଦନ ଦାସ—ଓଡ଼ିଶାର ବିଭିନ୍ନ ଅଞ୍ଚଳକୁ ଓଡ଼ିଶାରେ ମିଶାଇବା ଲାଗି ସେ ପ୍ରଥମେ ଚେଷ୍ଟା କରିଥିଲେ ।

---

ବ୍ରହ୍ମପୁର ରଥ ପ୍ରେସରେ ଶ୍ରୀରାମଚନ୍ଦ୍ର ରଥଙ୍କ ଦ୍ୱାରା ମୁଦ୍ରିତ ୧୯୫୪ ।